ଗୋପବଂଧୁ

# ସାହିତ୍ୟ-ସମୀକ୍ଷା


ରଚୟିତା

**ଶ୍ରୀ ନିତ୍ୟାନନ୍ଦ ମହାପାତ୍ର**



ପ୍ରକାଶିକା

**ଶ୍ରୀମତୀ ସତ୍ୟଭାମା ମିଶ୍ର**

**ମିଶ୍ର ନିବାସ, ନଳବଣା**

ଆସିକା (ଗଞ୍ଜାମ)

୧୯୫୭

ମୂଲ୍ୟ—ଦୁଇଟଙ୍କା ମାତ୍ର

ଉତ୍ସର୍ଗ ......................................

ଯେଉଁ ମାତୃଜାତିର

ବାତ୍ସଲ୍ୟାମୃତ ସେବନରୁ

ବଞ୍ଚିତ ହୋଇ ପୁଣ୍ୟାତ୍ମା ଗୋପବଂଧୁଙ୍କ

ତୃଷାତୁର କଣ୍ଠ ଗାଇ ଉଠିଥିଲା ଆକୁଳରେ

ଗଦ୍‌ଗଦ୍ ହୋଇ—

"ଦେଖି ନାହିଁ ମାତୃମୁଖ ଅଜ୍ଞାନ ଶୈଶବେ"

ସେହି ମାତୃଜାତିର ପଦକମଳ ତଳେ

କ୍ଷୁବ୍‌ଧ ହୃଦୟର ପୂଜାର୍ଘ୍ୟ ରୂପେ

ବାଢ଼ିଦେଲି

ଆଦ୍ୟ ପ୍ରକାଶିତ ଏଇ ମୋର

**ଗୋପବଂଧୁ-ସାହିତ୍ୟ-ସମୀକ୍ଷା**

ବିଶେଷ ସୁଖର କଥା—

ଓଡ଼ିଶାର ସାରସ୍ୱତ ନିକୁଞ୍ଜରେ
ଉତ୍କଳମଣି ଗୋପବନ୍ଧୁଙ୍କର ଯେ ବିରାଟ
ବ୍ୟକ୍ତିତ୍ୱ ସେଥିପ୍ରତି ଦେଶବାସୀଙ୍କର ଦୃଷ୍ଟି
ଆକର୍ଷଣ କରି ସାହିତ୍ୟ କ୍ଷେତ୍ରର ଯେଉଁ ଅଭାବ ପୂରଣ
କରିଛି ବୋଲି ଭାବୁଛି—ତାହା ସହୃଦୟ
ଦେଶବାସୀ ଆନନ୍ଦ ସହକାରେ
ଗ୍ରହଣ କଲେ ନିଜକୁ
କୃତାର୍ଥ ମଣିବ ।

ନଲବଣ୍ଠା
୨୮-୭-୫୭

ପ୍ରକାଶିକା

## —ପ୍ରଶଂସା ପତ୍ର—

**Government of Orissa**

***Shri R. N. Rath*** — କଟକ

(Minister Finance & Education) — ତା ୪।୧୦।୫୭

D. O. No. 3788 M. F.

ପ୍ରିୟ ନିତ୍ୟାନନ୍ଦ ବାବୁ,

ଆପଣଙ୍କର ତା ୨୭-୯-୫୭ ର ପତ୍ର ଏବଂ ସେଥି ସହିତ ପଠାଇଥିବା 'ଗୋପବନ୍ଧୁ-ସାହିତ୍ୟ-ସମୀକ୍ଷା' ପୁସ୍ତକ ପାଇ ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ଆପଣଙ୍କ ପୁସ୍ତକର କେତେକାଂଶ ମୁଁ ପାଠ କଲି । ସେଥିରେ ଅନେକ ଗୁଡ଼ିଏ ଉପାଦେୟ ବିଷୟ ଉଲ୍ଲିଖିତ ହୋଇଛି; କିନ୍ତୁ କେତେ ଜାଗାରେ ଭାଷାଗତ ପ୍ରମାଦ ରହି ଯାଇଛି । ମୋର ଆଶା ଆପଣଙ୍କ ଭବିଷ୍ୟତ ସଂସ୍କରଣରେ ସେ ସବୁକୁ ସୁଧାରିବାକୁ ଚେଷ୍ଟା କରିବେ ।

× × ×

ଇଂରାଜୀ ଓ ହିନ୍ଦୀ ସଂସ୍କରଣ ସକାଶେ ମୋ ହାତ ପାଣ୍ଠିରୁ କିଛି ସାହାଯ୍ୟ ଦେବା କଥା ବିଚାର କରୁଥିଲି । ମାତ୍ର ବର୍ତ୍ତମାନ ଦେଖୁଛି ସବୁ ଟଙ୍କା ଶେଷ ହୋଇଗଲାଣି । ତଥାପି ମୁଁ ଟ ୫୦ ଙ୍କା ପର୍ଯ୍ୟନ୍ତ ଆପଣଙ୍କୁ ନିକଟ ଭବିଷ୍ୟତରେ ପଠାଇବା ପାଇଁ ଚେଷ୍ଟା କରିବି । ଯଦି ପଠାଇ ପାରେ ତାହାହେଲେ ତାହା ଗ୍ରହଣ କରିବେ ଏବଂ ଅଧିକ ଦେଇ ପାରିଲି ନାହିଁ ବୋଲି କ୍ଷମା କରିବେ । ଇତି ।

ଆପଣଙ୍କର

ସ୍ବାଃ **ରାଧାନାଥ ରଥ**

## —ପ୍ରାପ୍ତି ସ୍ୱୀକାର—

ମାନ୍ୟବର ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଉପରୋକ୍ତ ପ୍ରତିଶ୍ରୁତି ଦାନ ଟ ୫୦ ଙ୍କା ୨୫-୧୦-୫୭ରେ ପାଇ ମୁଁ ଚିର କୃତଜ୍ଞ । ଇତି ।

—ଲେଖକ

ଓଁ ମା ।

# ପଦେଅଧେ

ଜୀବନ ନିୟତିର କ୍ରୂର ଅଟ୍ଟହାସ୍ୟ ତଳେ ପ୍ରାଣଦା ଓ ଶୁଭଦାର ଅକାଳ ବିୟୋଗାନ୍ତକ ବେଦନାଶ୍ରୁ ହୃଦୟକୁ ସିକ୍ତ କଲା ବେଳେ, ମଣିଷ-ସ୍ରଷ୍ଟାର ସ୍ୱାଭାବିକ ଦିବ୍ୟ ଆଶୀର୍ବାଦ ଯେତେ-ବେଳେ ଭସ୍ମାଚ୍ଛାଦିତ ଅଗ୍ନି ସ୍ଫୁଲିଙ୍ଗ ସମ ବେଳକାଳ ଜାଣି ପ୍ରଚଣ୍ଡ ଆଗ୍ନେୟ ବିସ୍ଫୋରଣରେ ପର୍ଯ୍ୟବସିତ ହୁଏ, ମଣିଷର ମହାମୂଲ୍ୟ ସମ୍ପଦ ଶିକ୍ଷା, ଦୀକ୍ଷା ଓ ଆଗୃର ବଗୃରକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରି ଖିଲିଖିଲି ହସରେ—ସେଇଠି ଯେ ସାହିତ୍ୟ ସାଧନା ଏକ ଅବାନ୍ତର ଓ ପ୍ରହେଳିକା, କେହି ହେଲେ ଅସ୍ୱୀକାର କରିବେ ନାହିଁ ।

ତଥାପି ମଣିଷ ଗୃହେ ତା’ ମନର ଉଲ୍ଲାସ ଓ ବିଳାସ—ଯେପରି ଅଙ୍ଗାର ଗୃହେ ନିଜକୁ ଉତ୍ତପ୍ତ କରି ଖାଦ୍ୟ ପ୍ରସ୍ତୁତି ପାଇଁ ଇନ୍ଧନ ଯୋଗାଇବାକୁ ।

ଏହି ଦୃଷ୍ଟିରେ ସେହି ମୋର ପ୍ରବୃତ୍ତି, ଯେଉଁ ପ୍ରବୃତ୍ତି କି ୧୯୩୯ ସାଲ ସପ୍ତମ କ୍ଲାସରେ ହୃଦୟରେ ଜାତ ହୋଇ ଦେଇଥିଲା ପ୍ରେରଣା ଲେଖିବାକୁ ମୋ ଜନ୍ମଭୂମି ଗଞ୍ଜାମ ଗ୍ରାମସ୍ଥ ଇତିହାସପ୍ରସିଦ୍ଧ ‘ପୋତାଗଡ଼’ ସମ୍ବନ୍ଧୀୟ ବିଷୟବସ୍ତୁ—କବିବର ରାଧାନାଥଙ୍କ ‘ଦରବାର’ କବିତା ସମ୍ବଳିତ ‘କି ଥିଲା ଏ ରାଜ୍ୟ କି ହୋଇଛି ଆଜ’ ଅବଲମ୍ବନରେ କେତେ ଧାଡ଼ି କବିତା ।

ସେହିଦିନୁ ସେଥିପ୍ରତି ମନ ବଳି ନ ଥିଲେ ସୁଦ୍ଧା ଯେତେବେଳେ ମେଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇ ଷୋଡ଼ଶ

ବୟସରେ ଛତ୍ରପୁରରୁ ଗାଁକୁ ଫେରେ, ଗାଁ ଗଡ଼ପାଖର ନୀରବତା, ଋଷିକୁଲ୍ୟା ନଦୀ-ସାଗରସଙ୍ଗମର ରୁଦ୍ର ମଧୁରତା ସେହି ପ୍ରବୃତ୍ତିକୁ ପୁନରପି ଜାଗ୍ରତ କରି ପ୍ରେରଣା ଦିଏ ଲେଖିବାକୁ । ଲେଖେ । 'ପୋତାଗଡ଼' ଖଣ୍ଡକାବ୍ୟଟି ଶେଷ ହୁଏ । ତା' ସଙ୍ଗେ ସଙ୍ଗେ କହିବା ବାହୁଲ୍ୟ ନୁହେ ଯେ କାବ୍ୟ, କବିତା, ଉପନ୍ୟାସ, ଗଳ୍ପ, ପ୍ରବନ୍ଧ ଓ ନିବନ୍ଧ ପରିଶେଷରେ ନାଟକ ଲେଖିବାରେ ଯତ୍ନଶୀଳ ହୁଏ । କିନ୍ତୁ ପଞ୍ଚବିଂଶ ବର୍ଷ ବୟସରେ ଯେତେବେଳେ ପଦାର୍ପଣ କରେ, ବାସ୍ତବ ଦୁନିଆର ତୀବ୍ର ପ୍ରକୋପ ମାନବିକତାର ମୂଳଦୁଆ ହଲାଇ ମନରେ ଏକ ଅସ୍ୱାଭାବିକ ପରିଣତି ଘଟାଇଲା—ଯଦ୍ଦ୍ୱାରା କି ସାହିତ୍ୟ ସାଧନା କାହିଁକି ଦୈନନ୍ଦିନ କ୍ରିୟାକଳାପ ପ୍ରତି ମନ ବଳେ ନାହିଁ, ବଳିଲେ ମଧ୍ୟ ସେଥିରେ ଶୃଙ୍ଖଳା ରହିପାରେ ନାହିଁ । ମୂକ ହୋଇ ବସିଲେ ସୁଦ୍ଧା ସେହି ପ୍ରେରଣା ଓ ଉତ୍ସାହ ଆସେ । କିନ୍ତୁ ଖଣ୍ଡିଆଭୂତ ପରି ତାହା କେଉଁଆଡ଼େ ଉଭେଇ ଯାଏ । ସେହିଠି ସୃଷ୍ଟି ହୁଏ, ପ୍ରବୃତ୍ତି ଓ କଳ୍ପନା ମଧ୍ୟରେ ବ୍ୟବଧାନ—ନୈରାଶ୍ୟରେ ମନର ଆକୁଳତା ।

ହେଲେହେଁ ରୌଦ୍ର ପ୍ରଚଣ୍ଡତାର ରୁଦ୍ର ପ୍ରକୃତି ଯେପରି ମେଘମେଦୁର ତଳେ ଶସ୍ୟଶ୍ୟାମଳ ସୁଷମାରେ ଉଲ୍ଲସିତ ହୋଇ ପ୍ରାଣରେ ଦିଏ କର୍ମୋତ୍ସାହ, ଶାନ୍ତି ଓ ଆନନ୍ଦ—ସେପରି 'ଉତ୍କଳ ସାହିତ୍ୟ ସମାଜ' ଆନୁକୂଲ୍ୟରେ ଆହୂତ ହୋଇଥିବା 'ଓଡ଼ିଆ ସାହିତ୍ୟକୁ ଗୋପବନ୍ଧୁଙ୍କ ଦାନ' ପ୍ରବନ୍ଧ ପ୍ରତିଯୋଗିତା ମନର ଜଡ଼ତା ଭିତରେ ଫୁଟାଏ କର୍ମପ୍ରବଣତା । ଲେଖେ, ଲେଖା ଶେଷ ହୁଏ—ତନ୍ନ ତନ୍ନ କରି ପଢ଼ିବାରେ ଧୈର୍ଯ୍ୟ ନ ଥିଲେ ସୁଦ୍ଧା କର୍ତ୍ତବ୍ୟ ଦୃଷ୍ଟିରୁ ପଢ଼େ । କିନ୍ତୁ ନିର୍ଦ୍ଦିଷ୍ଟ ଦିନ ଯେତେବେଳେ ପଠାଏ, ଡାକଖର୍ଚ୍ଚ ଅଭାବ ଆସି ସେତିକିବେଳେ ବାଧା ଦେବାରୁ

ସେଥିରୁ ଉଦାହରଣ ଯାଏ—'ମନବୋଧ ଚଉତିଶା'ରେ ଆତ୍ମପ୍ରସାଦ ଲାଭ କରେ । ତାହା ଯେ କିପରି ଯନ୍ତ୍ରଣା, ଅନୁଭବୀ ମାନେହିଁ ବୁଝି ପାରିବେ ।

ସେହି ଦିନଠାରୁ ଉକ୍ତ ପାଣ୍ଡୁଲିପି ପଡ଼ିଥାଏ—ମୋ ଜୀବନର ଗତି ସଙ୍ଗରେ ନିଜକୁ ନିୟନ୍ତ୍ରିତ କରି, କେତେବେଳେ କେଉଁଠି ହୋସ୍ ଥିଲେ ମଧ୍ୟ ସମୟାନୁକ୍ରମେ କାହିଁକି କେଜାଣି ସେଥିପ୍ରତି ତଥା ସାହିତ୍ୟ ସାଧନା ପ୍ରତି ଆସେ ମୋର ତୁଚ୍ଛତା । ଉଦ୍ଦାମ କୋହ ଜାତ ହୁଏ, ସତେ କିବା ବେଦନାଭିଭୂତ ଅନ୍ତରର ତାହା ଯେପରି ଇଙ୍ଗିତ । ସହି ସମ୍ଭାଳି ରହେ ।

ଏପରି ଚାରି ବର୍ଷ କଟିଯିବା ପରେ କେଉଁ ଭାଗ୍ୟବଶତଃ ମୋର ମାତୃତୁଲ୍ୟା, ପରମ ପୂଜନୀୟା ଓ ଧର୍ମପରାୟଣା ଶ୍ରୀମତି ସତ୍ୟଭାମା ମିଶ୍ରଙ୍କର କୃପା-ଦୃଷ୍ଟିରେ ଯେତେବେଳେ ଲୋକ-ଗୋଚରକୁ ଆସିବାକୁ ପଡ଼େ ଉକ୍ତ ପାଣ୍ଡୁଲିପିଟି ସେତେବେଳେ ସେଥିରୁ ଉଦ୍ଧାର ହୋଇ ଛାପାଖାନାକୁ ଯାଏ । ଛପା ହୁଏ—ଶେଷ ହୁଏ ମଧ୍ୟ । ଶୋଚନା ଏଥିରେ କିଛି ନାହିଁ । କିନ୍ତୁ ଗୋପବନ୍ଧୁଙ୍କ ଜୀବନର ଯାବତୀୟ ଘଟଣାବଳୀ ନେଇ ଯେଉଁ ସମୀକ୍ଷା ପ୍ରକାଶ କରିବାକୁ ଉତ୍କଣ୍ଠିତ ହୋଇଥିଲି, ତାହା ସମ୍ପୂର୍ଣ୍ଣରୂପେ ଚରିତାର୍ଥ ହୋଇପାରି ନଥିବା ଯୋଗୁଁ ମନରେ ଆସେ କ୍ଷୋଭ ଓ ଦୁଃଖ । ତଥାପି ଆଶା ଅଛି, ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ପୂଜନୀୟ ସହକର୍ମୀମାନଙ୍କର ତଥା କବି ଓ ସାହିତ୍ୟିକମାନଙ୍କର ଆଶୀର୍ବାଦରେ ଆଶାକୁ ମୋର ସାଫଲ୍ୟ-ମଣ୍ଡିତ କରି ଏହାର ହିନ୍ଦୀ ଓ ଇଂରେଜୀ ସଂସ୍କରଣମାନଙ୍କରେ ସେ ଗୁଡ଼ିକ ସନ୍ନିବେଶିତ କରିବି । ଏଥିପାଇଁ ସେମାନଙ୍କ ସାହାଯ୍ୟ, ସହାନୁଭୂତି ଓ ସହଯୋଗ ପ୍ରାର୍ଥନା କରେ ।

ପୁଣି ମୋର ଏହି ପ୍ରାଥମିକ ଉଦ୍ୟମରେ ଯଦି କିଛି ଭ୍ରମ ପ୍ରମାଦ ଥାଏ, ତେବେ କେହି ସହୃଦୟ ସୁହୃଦ ତାହା ଜଣାଇ ଦେଲେ ସେ ସବୁ ପରବର୍ତ୍ତୀ ସଂସ୍କରଣମାନଙ୍କରେ ସଂଶୋଧନ କରିବି ବୋଲି ଆଶାକରେ ।

ପରିଶେଷରେ ଖଲିକୋଟ କଲେଜର ଇଂରାଜୀ ଅଧ୍ୟାପକ ଶ୍ରୀମାନ୍ ଦେବରାଜ ପାଣିଗ୍ରାହୀ, ଓଡ଼ିଆ ଅଧ୍ୟାପକ ଶ୍ରୀମାନ୍ ଚନ୍ଦ୍ରମଣି ଦାସ, ପଣ୍ଡିତ ଶ୍ରୀମାନ୍ ରଘୁନାଥ ଶାସ୍ତ୍ରୀ ଓ ଗାନ୍ଧୀ ମହାପୁରାଣ ପ୍ରଣେତା ପଣ୍ଡିତ ଶ୍ରୀମାନ୍ ନୀଳକଣ୍ଠ ରଥ ତଥା ଅନ୍ୟାନ୍ୟ ସାହିତ୍ୟିକ ଓ ପଣ୍ଡିତମାନଙ୍କର ଆଶିଷ ଲଭି କରି ମୋର ସେହି ବାଳୁତ-ମତି ସାହିତ୍ୟ ସାଧନ ତୃଷ୍ଣାକୁ ଚରିତାର୍ଥ କରିବା ନିମନ୍ତେ ଯିମିତି ଆଗଭର ହୋଇଛି, ସେଥି ସକାଶେ ସେହି ପରମ ପୂଜନୀୟ ଗୁରୁଜନମାନଙ୍କର ପଦକମଳରେ ମୋର ଏହି କ୍ଷୁଦ୍ର ହୃଦୟର ଭକ୍ତି ଓ କୃତଜ୍ଞତା ଜ୍ଞାପନ କରି ନିଜକୁ ଭାଗ୍ୟବାନ ମଣୁଛି । ଏହି ଭାଷା ହିଁ ସେମାନଙ୍କ ନିକଟରେ ଯେପରି ଚିରଦିନ କାମ୍ୟ ହୋଇ ରହେ, ପରମପିତା ସେଥିପାଇଁ ମୋତେ ଆଶୀର୍ବାଦ ଦିଅନ୍ତୁ ।

ବ୍ରହ୍ମପୁର
ତା ୪-୭-୧୯୫୭

ବିନୀତ
**ଲେଖକ**



ଓଁ ମା

# ଗୋପବନ୍ଧୁ

# ସାହିତ୍ୟ-ସମୀକ୍ଷା

"Lives of great men all remind us
We can make our lives sublime."

"ବାଲ୍ୟକାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟସହଜ ଉଦ୍ୟମ ମଧ୍ୟ ସେ ଆଡ଼େ କରୁଥିଲି । ମାତ୍ର ଘଟଣା ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିରଦିନ ପାଇଁ ସେ ଆଶା ମଉଳିଛି ।"

ଏହି ନୈରାଶ୍ୟ-ବାଣୀ ଝଙ୍କୃତ ହୋଇଥିଲା ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ହୃଦୟପୁରରେ । ନିଜର କବିପ୍ରତିଭା ପ୍ରତି ସ୍ୱୟଂ ଗୋପବନ୍ଧୁ ଯେତିକି ନିରାଶାବାଦୀ, ଦେଶବାସୀ ତଦପେକ୍ଷା ଅଧିକ ଜାଣନ୍ତି ନାହିଁ ଯେ ଗୋପବନ୍ଧୁ ଜଣେ କବିତା-କଳା-କୁଶଳୀ । କାରଣ ଦୀନବନ୍ଧୁ ଗୋପବନ୍ଧୁ ଜନସମୂହ ସମ୍ମୁଖରେ ଜଣେ ନିସ୍ୱାର୍ଥପର ଦେଶସେବୀ ହିସାବରେ ଯେତେ ପରିଚିତ, କବି ହିସାବରେ ସେତେ ପରିଚିତ ନୁହନ୍ତି, ଅବଶ୍ୟ କେତେକ ସାହିତ୍ୟସେବୀଙ୍କୁ ବାଦ୍ ଦେଲେ । ହେଲେହେଁ ଚିର ନିଷ୍ପେଷିତ ହୃଦୟପୁର କୁମୁଦ-ଇନ୍ଦୁ ଗୋପବନ୍ଧୁ ତଥାପି କବି, କବି ପଦବୀର

ଯଥାର୍ଥ ଅଗ୍ରଦୂତ । ସେ ଯେପରି ଜଣେ ଧୁରନ୍ଧର ବା ବିଚକ୍ଷଣ ରାଜନୀତିଜ୍ଞ, ସେପରି ମଧ୍ୟ ଜଣେ ପ୍ରତିଭାବାନ୍ କବି ବା ସାହିତ୍ୟିକ । କବି ମନୋଭାବ ତାଙ୍କର ଯୁବାବସ୍ଥାରୁ ଗୁଞ୍ଜରିତ ହେଉଥିଲା । କିନ୍ତୁ ସେହି ଗାନ-ମାଧୁରୀ ନିସ୍ପନ୍ଦିତ ହୋଇଥିଲା—ଯାହାର କର୍ଣ୍ଣିକାର ସୌନ୍ଦର୍ଯ୍ୟ ମାଧୁରୀ ପ୍ରାତଃ ରବିକର ପରଶରେ ଯେପରି ଉଦ୍ଭେଇଯାଏ । ଏଇ କଥା ସୁସ୍ପଷ୍ଟଭାବେ ଉପରୋକ୍ତ ପଦ-ଗୁଡ଼ିକରେ ପ୍ରତିପାଦିତ ହୋଇଛି ।

ଶାରଳା ବା ପୌରାଣିକ ଯୁଗ, ପଞ୍ଚସଖା ଯୁଗ ଓ ଭଞ୍ଜଯୁଗ—ଏପରି ତିନି ଯୁଗାନ୍ତେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ସୃଷ୍ଟି ହୁଏ ଆଧୁନିକ ଯୁଗ । ଅବଶ୍ୟ ସ୍ୱୀକୃତ ଯେ ଯୁଗସୃଷ୍ଟି ଅଭିପ୍ରାୟରେ କବି ବା ଲେଖକ ଲେଖନୀ ଚାଳନ କରିନଥାନ୍ତି, ଯଥା ସମୟର ତଥା ରୁଚିକୁ ନେଇ କବି ଲେଖିଥାଏ—କବିତା ବା ସାହିତ୍ୟ । ସାହିତ୍ୟ ସମାଲୋଚକଗଣ କିନ୍ତୁ ଏପରି ଯୁଗ ସୃଷ୍ଟି କରି ବିଭିନ୍ନ ନାମକରଣରେ ବିଭାଗମାନ କରିଥାନ୍ତି । ସେ ଯାହାହେଉ, ଏହି ଲେଖାର ଆଲୋଚ୍ୟ କବି-ପ୍ରତିଭା-ବିକଶିତ-ପୁଷ୍ପ ହେଉଛି ଆଧୁନିକ ଯୁଗୀୟ ଭଞ୍ଜ କାବ୍ୟ କବିତାଦିର 'ନାରିକେଳ' କାଠିନ୍ୟ ବିହୁନେ କମଳା ସଦୃଶ କୋମଳ କବିତାବଳୀ, ଅର୍ଥାତ୍ ସହଜ ଓ ସରଳ ସାହିତ୍ୟ, ଯାହାକି ଆଧୁନିକ ଯୁଗର ବୈଶିଷ୍ଟ୍ୟ ।

ଏହି ଅଭିନବ ପ୍ରେରଣାରେ ପ୍ରୋତ୍ସାହିତ ହୋଇ ଆମର କବି ଗୋପବନ୍ଧୁ ଓଡ଼ିଆ ସାହିତ୍ୟର ଏକ ଜଟିଳ ସନ୍ଧିସ୍ଥଳରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ନିଷ୍ଠାପର ବାଣୀସାଧନା ପ୍ରସୂତ ଅପୂରଣୀୟ ରଚନାବଳୀ ବା ସାହିତ୍ୟିକ କର୍ମାବଳୀ ବିଶେଷଭାବରେ କହିବାକୁ ଗଲେ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠା

କରିଛନ୍ତି । ବନ୍ୟା ପ୍ରପୀଡ଼ିତ, ଦୁର୍ଭିକ୍ଷ କଷାଘାତରେ ମର୍ମାହତ ଓ ଦୁଃଖୀ, ଦାରିଦ୍ର୍ୟ ଜର୍ଜରିତ ଦେଶର ସେବାରେ ନିଜକୁ ନିୟୋଜିତ କରି "ମିଶୁ ମୋର ଦେହ ଏ ଦେଶ ମାଟିରେ" ବ୍ରତୀ ଥିଲେ ସୁଦ୍ଧା ଅତ୍ୟଳ୍ପ ସମୟରେ ବସି ଯେପରି ଓଡ଼ିଆ ସାହିତ୍ୟନିକୁଞ୍ଜକୁ ଅପୂର୍ବ ମଞ୍ଜୁଳ ପରିପାଟୀରେ ବିଶୋଭିତ କରିଅଛନ୍ତି, ତାହା ତାଙ୍କ କବିତ୍ୱର ଯଥେଷ୍ଟ ପରିଚୟ ଦେବା ସଙ୍ଗେ ସଙ୍ଗେ ଓଡ଼ିଆ ସାରସ୍ୱତ ଭଣ୍ଡାରର ଚିରନ୍ତନ ସମ୍ପଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାହିତ୍ୟରେ ଜାତୀୟତା, ଆଦର୍ଶ ମତବାଦର ପ୍ରତିଷ୍ଠା, ଦାର୍ଶନିକ ତତ୍ତ୍ୱର କମନୀୟତା, ନୂତନ ଭାବଭଙ୍ଗୀର ଚିତ୍ତାକର୍ଷଣୀୟତା, ଭାଷା ଓ ଭାବ ପ୍ରକାଶର ମୌଳିକତା ଓ ଉଦ୍ଦୀପକତା ଏବଂ ପରିଶେଷରେ ଗଦ୍ୟ ପଦ୍ୟ ଉଭୟରେ ଯେପରି କଳା ନିପୁଣତା ସରଳ, ପ୍ରାଞ୍ଜଳ, ସରସ ଓ ଭାବଗର୍ଭିକ ରୂପେ ଏକ ଅଭିନବ ସ୍ୱାତନ୍ତ୍ର୍ୟ ଓ ବିଶିଷ୍ଟ ଶୈଳୀରେ ଆତ୍ମପ୍ରକାଶ କରିଛି---ତାହା ସତେ ଯେପରି ଓଡ଼ିଆ ସାହିତ୍ୟର ଦୁର୍ଲଭ ଧନ ଓ ଅଲୌକିକ ଅବଦାନର ଅଭିବ୍ୟକ୍ତି ।

**ଜାତୀୟତା:**—ଜାତୀୟ ଅର୍ଥାତ୍ ଜାତି ସମ୍ବନ୍ଧୀୟ ଚିନ୍ତାଧାରା ପ୍ରାଞ୍ଜଳଭାବେ ଯେଉଁ ସାହିତ୍ୟରେ ବିକାଶପ୍ରାପ୍ତ ହୋଇ ସାମାଜିକ ଜୀବନକୁ ସତ୍ ପରିବେଷ୍ଟନୀ ମଧ୍ୟରେ ଶୃଙ୍ଖଳିତ କରେ, ଦେଶ ଓ ଜାତିର ବିଭିନ୍ନ ସମସ୍ୟା ସମୂହର ବାହକ ରୂପେ ଯେତେ ପରିମାଣରେ ନିଖୁଣ ଚିତ୍ର ଦିଏ, ସେହି ସାହିତ୍ୟ ସେତେ ଅପ୍ରତିଦ୍ୱନ୍ଦୀ ଭାବେ ଜାତୀୟ ଜୀବନ ଉପରେ ପ୍ରଭାବ ପକାଇପାରେ । ଏତାଦୃଶ ସାହିତ୍ୟ ସୃଷ୍ଟି କରି ଭଞ୍ଜ, ରବୀନ୍ଦ୍ର, ଶ' ପ୍ରଭୃତି ବିଶ୍ୱପ୍ରଖ୍ୟାତ ହୋଇଅଛନ୍ତି । ସେପରି ଗୋପବନ୍ଧୁ-ସାହିତ୍ୟ ପ୍ରତି ଦୃକ୍‌ପାତ କଲେ କହି ପାରିବା ନାହିଁ ଯେ ବିଶ୍ୱକବିଗଣଙ୍କ ମହିମାଠୁ

ଗୁଣାବଳୀ ସେଥିରୁ ବାଦ୍ ଦିଆଯାଇଛି ବୋଲି । ଜାତୀୟତାର ନିପୁଣ ଶିବ ଯେପରି, ରାଜନୀତି, ଅର୍ଥନୀତି ଓ ସମାଜନୀତି ମଧ୍ଯ ସେହିପରି ଗୋପବନ୍ଧୁ ସାହିତ୍ୟରେ ମୂର୍ତ୍ତିମନ୍ତ । ମାନବ ମନର ଘାତ ପ୍ରତିଘାତ, ସହାନୁଭୂତି, ସ୍ନେହ, ପ୍ରୀତି, ଆଶା, ଆକାଙ୍କ୍ଷା, ସୁଖଦୁଃଖ, ଗତି ପରିଣତି, ସମସ୍ୟା ସମାଧାନ ଇତ୍ୟାଦି ଏପରିଭାବେ ଏହି ସାହିତ୍ୟରେ ସୁସଜ୍ଜିତ ବା ଚିତ୍ରିତ ଯେ ଏହାକୁ ମାନବ ଜାତିର ପ୍ରଦର୍ଶନୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାତିକୁ ଉଚ୍ଚ ଚିନ୍ତାଧାରାରେ ଉଦ୍‌ବୁଦ୍ଧ କରିବା ପାଇଁ ସାହିତ୍ୟ ମାଧ୍ୟମରେ ବହୁଦର୍ଶୀ ମତବାଦର ସୁରଭିତ ବିଭିନ୍ନ କୁସୁମ ଜାତୀୟ ମଳୟ ପରଶରେ ମନୋଜ୍ଞ ସୁବାସିତ ମଣ୍ଡଳ ସୃଷ୍ଟି କରି ପ୍ରାଣର ନିଭୃତ ଗୁପ୍ତ ତଥ୍ୟର ସେବିକା ରୂପେ ଅବତୀର୍ଣ୍ଣ ହୋଇ ଯେପରି ନୂତନାଶାଲୋକର ସନ୍ଧାନ ଦେବ ସେପରି ସେ କର୍ମପ୍ରଣାଳୀ ସ୍ଥିର କରିଥିଲେ । ତାହା ଓଡ଼ିଆ ସାହିତ୍ୟରେ ବିରଳ । ସାହିତ୍ୟର ଲକ୍ଷଣ ଦେବାକୁ ଯାଇ ମହାତ୍ମା 'ନୋବେଲ୍' ଯେଉଁ ମତ ବ୍ୟକ୍ତ କରିଅଛନ୍ତି, ଯଥା— "Literature must have an idealistic tendency to uplift humanity", ତାହା ଗୋପବନ୍ଧୁ ସାହିତ୍ୟର ମୂଳ ମନ୍ତ୍ର । ବାସ୍ତବ ଜୀବନରେ ଜାତୀୟତାକୁ ସେ ଯେପରି ରୂପାୟିତ କରିଛନ୍ତି ତାହା ସହିତ ବର୍ଣ୍ଣାଡ଼ ଶ'ଙ୍କ ସାହିତ୍ୟ ସମ୍ବନ୍ଧରେ ଯେ କେତେକ ପାଶ୍ଚାତ୍ୟ ଲେଖକ ମତ ଦେଇଛନ୍ତି, ତାହା ତୁଳନୀୟ । ଯଥା—"On the whole, however, he usefully renews and refreshes our notion of life and the world. × × × He has been one of the most active leavening influences in the moral transformation of contemporary England".

ସାହିତ୍ୟ ସୃଷ୍ଟି କରିବା ପୂର୍ବରୁ ବହୁଦେଶଦର୍ଶୀ ମତବାଦ ଜନସମୂହ ଚରିତ୍ର ଉନ୍ମେଷରେ ସହାୟକ ହୋଇ ଯେପରି ଜାତୀୟ ଜୀବନକୁ ସୁସ୍ଥ ଓ ସୁଶ୍ରୀ ମଣ୍ଡିତ କରିପାରେ ସେଥିପ୍ରତି ଗୋପବନ୍ଧୁ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରିଥିଲେ । କାରଣ ଏକଦେଶଦର୍ଶୀ ହେବା ଦ୍ୱାରା ସାହିତ୍ୟର ସାର୍ବଜନୀନତା ଓ ଉଦାରତା କ୍ଷୁଣ୍ଣ ହୋଇଥାଏ । ମାନବ ଜାତିକୁ ବିଭିନ୍ନ ଉପାଦାନ ଯୋଗାଇବା ତା'ପକ୍ଷେ ମରୁଭୂମିରେ ନୀର ସ୍ୱପ୍ନ ସଦୃଶ । ସେହି ହେତୁ ମାନବର ଚିନ୍ତାଧାରା ଯେତେ ଯେତେ କ୍ଷେତ୍ରରେ ପ୍ରବାହିତ ସେହି ସମସ୍ତଙ୍କୁ ଜୀବନ୍ତ କରି ଗୋପବନ୍ଧୁ ତାଙ୍କ ସାହିତ୍ୟରେ ପ୍ରତିମନ୍ତ କରିଅଛନ୍ତି । ପ୍ରାଚୀନ ସାହିତ୍ୟକୁ କଠୋର ସମାଲୋଚନାରେ ଦଗ୍ଧୀଭୂତ ନକରି ବରଂ ସେଥିରୁ ସେ ସାରାଂଶ ଗ୍ରହଣ କରି ଯୁଗୋପଯୋଗୀ ବେଶଭୂଷାରେ ସଜାଇ ଅଛନ୍ତି । କାରଣ ସାହିତ୍ୟକୁ ପରିପୁଷ୍ଟ କରିବାକୁ ହେଲେ କି ପ୍ରାଚୀନ କି ଆଧୁନିକ ସମସ୍ତ ସାହିତ୍ୟରୁ ବିଭିନ୍ନ ଭାବ ଆହରଣ କରି ଯୁଗାନୁଯାୟୀ ସୁଷମାମୟ କରିବା ହେଉଛି ସାହିତ୍ୟିକ ସାଧନାର ଗୌରବ । ଏହି ପ୍ରସଙ୍ଗରେ କାଳିଦାସ କହିଅଛନ୍ତି, ଯଥା—

"ପୁରାଣ ମିତ୍ୟେବ ନ ସାଧୁ ସର୍ବଂ
ନ ଚାପି କାବ୍ୟଂ ନବ ମିତ୍ୟବଦ୍ୟଂ
ସନ୍ତଃ ପରୀକ୍ଷ୍ୟାନ୍ୟତରଦ୍ ଭଜନ୍ତେ
ମୂଢ଼ଃ ପରପ୍ରତ୍ୟୟନେୟବୁଦ୍ଧିଃ ।"

ଅର୍ଥାତ୍—ପୁରାତନ ବୋଲି କାବ୍ୟ ନିର୍ଦ୍ଦୋଷ ନୁହେ ଅଥବା ନୂତନ ବୋଲି ଦୋଷଯୁକ୍ତ ନୁହେ । ସୁରସିକ ଉଭୟ ସାହିତ୍ୟ ପରିଶୀଳନ କରି ସାଧୁଭାବକୁ ଅନୁମୋଦନ କରିଥାନ୍ତି,

କିନ୍ତୁ ମୂଢ଼ମାନେ ପର କଥାରେ ବିଶ୍ୱାସ କରି ସୁଲଭରେ ମତ ପ୍ରକାଶ କରିଥାନ୍ତି ।

ତେଣୁ ଅତୀତ କବିମାନଙ୍କର ରଚନାବଳୀ ଅନୁଶୀଳନ କରିବା ଯେପରି କବିର ଧର୍ମ, ପ୍ରତିଭାର ସ୍ଫୁରଣ ମଧ୍ୟ ସେପରି । କବି ରାଜନୀତି, ଧର୍ମ, ଇତିହାସ, ରୀତିନୀତି, ବିଜ୍ଞାନ ପଠନରେ ବା ହୃଦ୍‌ବୋଧରେ କେତେଗୁଡ଼ିଏ କବିତ୍ୱ ଉପାଦାନ ସଂଗ୍ରହ କରିଥାଏ, ଯାହାର ସହାୟତାରେ ସେ ଜଣେ ସମାଜ-ସ୍ରଷ୍ଟା ବା ଦ୍ରଷ୍ଟା ହିସାବରେ ଗଣ୍ୟ ହୁଏ । **Shelly** କହିଅଛନ୍ତି **"Every great poet must innovate upon the example of his predecessors."** ଏହା ନିରାଟ ସତ୍ୟ । କାରଣ ଆଧୁନିକ ଯେ ପୁରାତନର ଗର୍ଭଜାତ ଏଥିରେ ସନ୍ଦେହ ନାହିଁ । ପରିମାର୍ଜିତ ଓ ପରିବର୍ଦ୍ଧିତ ରୂପେ ଯେଉଁ ସାହିତ୍ୟ ଆଜି ଉନ୍ନତତର ହୋଇ ଜାତିର ମୁଖ ଉଜ୍ଜ୍ୱଳ କରୁଛି ତାହା ଅତୀତର ସାଧନା ଓ ତ୍ୟାଗର ପରିଣତି ମାତ୍ର । ଅତଏବ ଅତୀତକୁ ଭୁଲିଯିବା ଅର୍ଥ ବର୍ତ୍ତମାନର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିବା । ଏହି ପ୍ରସଙ୍ଗରେ **T. S. Eliot** ଅତି ନିଷ୍ଠୁର ଭାବରେ କହିଅଛନ୍ତି— **"The people which ceases to care for its literary inheritance becomes barbaric".** ଅର୍ଥାତ୍ ଯେଉଁ ଜାତି ନିଜ ସାହିତ୍ୟିକ ପରମ୍ପରା ପ୍ରତି ଅନାଦର ଦର୍ଶାଏ ସେ ଜାତି ଯଥାର୍ଥରେ ଆଦିମ ଓ ବନ୍ୟ ।

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ ପ୍ରଭୃତି ପ୍ରାଚୀନ କବିଗଣ ଯେଉଁ ସାହିତ୍ୟ ରଚନା କରି ଯାଇଛନ୍ତି ସେମାନେ ପାରମ୍ପରିକ ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜତ୍ୱ ପ୍ରତିଷ୍ଠା କରିଅଛନ୍ତି । ଏପରିକି ଆଧୁନିକ ଯୁଗର ସ୍ରଷ୍ଟା ରାଧାନାଥ

ମଧ୍ୟ ସେହି ପାରମ୍ପରିକ ବାତାବରଣ ଭିତରୁ ନିଜକୁ ମୁକ୍ତ କରି ପାରି ନାହାନ୍ତି । ଏହାର ଗୃଷ୍ଟୁତ୍ତ ପ୍ରମାଣ ପ୍ରତିପାଦିତ କରିବ ତାଙ୍କର ସମୂହ ରଚନାବଳୀ । ତେଣୁ ଅତୀତକୁ ଭୁଲିଯିବା କବି ତଥା ସାଧାରଣ ମାନବ ପକ୍ଷେ ମଧ୍ୟ ସ୍ପୃହଣୀୟ ନୁହେ । ଆଜିକାର "ପଦ୍ମଶ୍ରୀ" ବା "ପଦ୍ମଭୂଷଣ" ଉପାଧି ଅତୀତର କେତେ ସାଧନା, ତ୍ୟାଗ ଓ ସହିଷ୍ଣୁତାର ପରିଣତି—ତାହା ଭୁଲିଯିବା କିପରି ?

ସେହି ଦୃଷ୍ଟିକୋଣରେ ଗୋପବନ୍ଧୁ ନିଜ ପାରମ୍ପରିକ ସାହିତ୍ୟିକ ଆଦର୍ଶ ଅନୁଶୀଳନରେ ଅବିଚଳିତ ରହି ତନ୍ମଧ୍ୟରୁ ଭାବ-ସୁଷମାକୁ ଯୁଗୋପଯୋଗୀ ବେଶଭୂଷାରେ ଭୂଷିତ କରି ସାହିତ୍ୟ ରଚନା କରିଥିଲେ । "ଚେତି ଚତୁରୀ ଗୃହିଁଲା ନିଶି ନାଶେ" କିମ୍ବା "ଯୋଷାବର ରେ, ଯଥାର୍ଥରେ ଜାଣି ମୁଁ ତୋର ରେ" ପ୍ରଭୃତି ଭଞ୍ଜ ଯୁଗୀୟ ନାୟିକାର କାମୋନ୍ମତ୍ତ କାରୁଣ୍ୟ—ତଥା ନାୟକର ମିନତିଭରା ଚଟୁଗିର ପ୍ରଭୃତି ସେ ଲେଖି ନାହାନ୍ତି କିମ୍ବା ଆକାଶ କୁସୁମ ପ୍ରୟାସୀ ସୁଦ୍ଧା ହୋଇ ନାହାନ୍ତି । ହେଗେଲ୍, ଫିକେଟ୍, ସେଲିଙ୍ଗ୍ ତଥା ବେଲିନସ୍କିଙ୍କପରି ରୋମାଣ୍ଟିସିଜମ୍‌କୁ ସମ୍ପୂର୍ଣ୍ଣଭାବରେ ପ୍ରତ୍ୟାଖ୍ୟାନ କରି ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ସାମ୍ୟବାଦୀ ରାଷ୍ଟ୍ର ଗଠନର ଚିନ୍ତାଧାରା ଗୋପବନ୍ଧୁ ଗ୍ରହଣ କରିଅଛନ୍ତି ।

**"I want that art and literature that can speak to the millions."**— ବାପୁଜୀଙ୍କର ଏହି ଉକ୍ତି ଯଥାର୍ଥଭାବେ ହୃଦ୍‌ବୋଧ କରିଥିଲେ ଗୋପବନ୍ଧୁ । କୋଟି କୋଟି ନିଷ୍ପେଷିତ ହୃଦୟର ଦୁଃଖସୁଖ, ଆଶାଆକାଂକ୍ଷା ପ୍ରଭୃତି ଯେଉଁ ବାସ୍ତବାନୁଭୂତିଗୁଡ଼ିକ ଯୁଗେ ଯୁଗେ ମଧ୍ୟ ଚିରନ୍ତନ ଓ ସତ୍ୟ, ସେଗୁଡ଼ିକୁ ସେ ସାହିତ୍ୟିକ ଆଦର୍ଶ ରୂପେ ଗ୍ରହଣ କରି ପ୍ରତ୍ୟେକ

ମାନବ ତନ୍ତ୍ରୀରେ ଜାତୀୟତା-ପ୍ରୀତି ବୁହାଇ ଅଛନ୍ତି । ପୁଣି ମଧ୍ୟ ତାହା ବ୍ୟକ୍ତିଗତ ସ୍ୱାର୍ଥ ସାଧନର ପ୍ରତୀକ ନହୋଇ—ହୋଇଛି ସମୂହ ଜାତିର ସ୍ୱାର୍ଥସିଦ୍ଧି ପାଇଁ ଓ କୋଟି କୋଟି ହୃଦୟର ଦୁଃଖ ସୁଖରେ ସମପ୍ରାଣତା ଜଣାଇବା ପାଇଁ । ପ୍ରତ୍ୟେକ ପ୍ରାଣର ଅନୁଭୂତିକୁ ନିଜର ଭିତରେ ପ୍ରତିଫଳିତ କରି କବିତାରେ ରୂପାୟିତ କରିଛନ୍ତି—ଖୁବ୍ ସୁନ୍ଦର ଓ ଚମତ୍କାର ଭାବରେ । **"There are indeed great artists who express only themselves. But the greatest of all are those whose heart beats for all men."** ଜଣେ ବଶିଷ୍ଟ ଶିଳ୍ପୀ ଓ ଶିକ୍ଷାବିତ୍‌ଙ୍କର ଏହି ଉକ୍ତି ଯଥାର୍ଥ ଭାବରେ ରୂପ ପାଇଛି ସାହିତ୍ୟସେବୀ ଗୋପବନ୍ଧୁଙ୍କର ପ୍ରତିଭା ଉନ୍ମେଷରେ, ଯାହାକି ଆମ ଜାତୀୟ ଜୀବନର ନିଖୁଣ ପ୍ରତିଫଳନ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

ଯେଉଁ ସାହିତ୍ୟରେ ସାମାଜିକ ଚିନ୍ତା, ଜାତି ଗଠନ ଚିନ୍ତା ଓ ଜୀବନର ଆଦର୍ଶ ଲିପିବଦ୍ଧ ହୋଇଥାଏ—ସେଇ ସାହିତ୍ୟ ଯୁଗ ନିର୍ବିଶେଷର ସାହିତ୍ୟ । ତହିଁରେ ନିହିତ ଥାଏ ମାନବ ଜାତିକୁ ଜୀବନୀ ଶକ୍ତି ଦେବାର ପ୍ରେରଣା ବା ଇଙ୍ଗିତ । ତେଣୁ ରାମାୟଣ ଓ ମହାଭାରତ ହଜାର ହଜାର ବର୍ଷ ପରେ ମଧ୍ୟ ପ୍ରତ୍ୟେକ ପ୍ରାଣକୁ ସ୍ପର୍ଶ କରେ ଏବଂ ଅମୂଲ୍ୟ ରତ୍ନ ହିସାବରେ ପ୍ରତ୍ୟେକ ଭାରତୀୟ ହୃଦୟରେ ନିଜର ଏକ ବିଶିଷ୍ଟ ଓ ସ୍ୱତନ୍ତ୍ର ସ୍ଥାନ ନିର୍ବାଚିତ କରି ନିଏ । ଅତଏବ ସାହିତ୍ୟ ବା କଳା ଆକାଶକୁସୁମୋତ୍ତୋଳନରେ ପ୍ରୟାସୀ ନହୋଇ ମାନବ ଜୀବନର ବାସ୍ତବତା ସହିତ ସଂଶ୍ଳିଷ୍ଟ ହେବା କଳାର କଳାତ୍ୱ ଓ କବିତାର କବିତ୍ୱ । ନଚେତ୍ ତାହା ପାଠକ ପ୍ରାଣକୁ ସ୍ପନ୍ଦିତ କରିପାରେ ନାହିଁ କିମ୍ବା ସାମାଜିକ

ଜୀବନକୁ ପ୍ରଭାବିତ କରିପାରେ ନାହିଁ, ଏହା ଧ୍ରୁବ ସତ୍ୟ । ଏହି ପ୍ରସଙ୍ଗରେ ପୂଜ୍ୟାସ୍ପଦ ବାପୁଜୀ କହିଅଛନ୍ତି, ଯଥା—**"All art must help the soul to realise its inner self. Anything which is hindrance to the flight of the soul is a delusion and snare."** ଏହି ଧରଣର ସାହିତ୍ୟ ରଚୟିତା ଥିଲେ ଅମର କବି ଗୋପବନ୍ଧୁ !

ଜାତୀୟତାକୁ ସାହିତ୍ୟରେ ରୂପବନ୍ତ କରି ପାଠକ ହୃଦୟରେ ସେ ଯେଉଁ ସ୍ପନ୍ଦନ ତୋଳିଛନ୍ତି ବା ଜାଗ୍ରତ ମନ୍ତ୍ର ଗାଇ ଜାତୀୟ ମହାତରଙ୍ଗରେ ମିଶାଇ ଦେଇଛନ୍ତି, କିବା ଦେଶାତ୍ମବୋଧରେ ଜାତିକୁ ଉଦ୍‌ବୁଦ୍ଧ କରି ପାଠକ ତଥା ଦେଶବାସୀଙ୍କର ସୁପ୍ତ ଶିରାପ୍ରଶିରାରେ ସେ ଯେଉଁ ଜାତୀୟ ଉତ୍ତେଜନା ବହ୍ନି କୁହୁକ ମନ୍ତ୍ର ତୁଳି ପ୍ରଜ୍ୱଳିତ କରି ଅନୁପ୍ରାଣିତ କରାଇ ଅଛନ୍ତି, ତାହାହିଁ ଓଡ଼ିଆ ସାହିତ୍ୟ କ୍ଷେତ୍ରର ବିଭୂତିବିଶେଷ କହିଲେ ଚଳେ । ତେଣୁ କାରାକୁ ସେ 'ପବିତ୍ର ପ୍ରଭାସ' କହିବା କିଛି ଅସଙ୍ଗତ ନୁହେଁ । ଯାହା ଆମର କଳୁଷିତ ଚକ୍ଷୁରେ ହେୟ, ଘୃଣ୍ୟ—ତାହା ଦିବ୍ୟ ଚକ୍ଷୁରେ ଅମର-ବିଭୂତି-ରତ୍ନାକର; ଯେହେତୁ ସାହିତ୍ୟ ଲୌକିକ ଦେବତୁମ୍ବିତ ନୁହେଁ, ଅଲୌକିକ ଉପାଦାନର ପ୍ରିୟତମ ବସ୍ତୁ । ସାହିତ୍ୟର ଆନନ୍ଦ ଦିବ୍ୟ ଆଭାରେ ବିଭାସିତ । **Shelly** ସେହେତୁ କହିଅଛନ୍ତି—**"poetry is something divine indeed"** —ବାସ୍ତବିକ ସତ୍ୟ । ଯାର ଅମୃତମୟୀ ଟରଣତା ମରୁଯାତ୍ରୀ ପିପାସୀର ଶୁଷ୍କ କଣ୍ଠରେ ଢାଳେ ସ୍ୱର୍ଗ-ଜାହ୍ନବୀର ସୁଶୀତଳ ବାରି ବିନ୍ଦୁ, ଅଗସ୍ତ୍ୟ ତାରକା ସମ ସର୍ବ ସ୍ଥଳରେ ବିରାଜିତ ହୋଇ ଦାରୁଣମୟ ଜଗତକୁ ଯେ କରେ ସତ୍ୟ, ଶିବ ଓ ସୁନ୍ଦର, ତାହା

ଯେ ଦ୍ରବ୍ୟ ରୂପର ରୂପାନ୍ତର, ଏଥିରେ ସନ୍ଦେହର ଅବକାଶ କିଛି ଅଛି କି ?

ସାହିତ୍ୟର ସେହି ସୂକ୍ଷ୍ମାନୁଭୂତିକୁ ଯେଉଁ ପ୍ରାଣ ନିବିଡ଼ ଭାବରେ ଉପଲବ୍ଧି କରିପାରିଲି—ତାହାର ଚକ୍ଷୁରେ ସଚରାଚର ପୃଥିବୀ ହେଲି ଅମୃତମୟ ଓ ଦେବବିଭୂତିର ଆଧାର । ଏହି ଉପଲବ୍ଧି ହିଁ ପୋଲିସ ବାହିନୀର ନିଦାରୁଣ ବାଣୀ ପ୍ରତିଧ୍ୱନିତ, ଲୌହଶୃଙ୍ଖଳ ଓ ତମ ପରିବେଷ୍ଟନୀ ମଧ୍ୟରେ 'ପବିତ୍ର ପ୍ରଭାସ'ର ପ୍ରେରଣା ଗୋପବନ୍ଧୁଙ୍କୁ ଦେଇଥିଲି; ଯାହାର ସହାୟତାରେ ବନ୍ଦୀଭାବେ ସେ ଦୁଃଖ କଷ୍ଟକୁ ଖାତିର ନ କରି କର୍ତ୍ତବ୍ୟ ଦୃଷ୍ଟିରୁ ରଚି ଯାଉଥିଲେ ସାରସ୍ୱତ ନିକୁଞ୍ଜ କାନନରେ ଉତ୍କଳ ଜାତୀୟତାର ବିଶ୍ୱକୋଷ ବା **Encyclopedia,** ଯାହା ଯୁଗ ନିର୍ବିଶେଷରେ ମଧ୍ୟ ଜାତିର କୁମ୍ଭକର୍ଣ୍ଣ ନିଦ୍ରା ବିଜଡ଼ିତ ପ୍ରାଣକୁ ଚେତନଶୀଳ କରାଉଥିବ ଏବଂ ବିଶ୍ୱ ଦରବାରରେ ଉତ୍କଳୀୟ ସଭ୍ୟତା ଓ ସଂସ୍କୃତିର ମହାନୁଭବତାକୁ ପ୍ରତିପାଦିତ କରାଇବାରେ ବିଶେଷ ସାହାଯ୍ୟ କରିବ । ଏଇଠି ପର୍ଯ୍ୟାଲୋଚନା କରିବା ଦରକାର ଯେ ଯେଉଁ ହୃଦୟ ଜାତୀୟତାଗ୍ନିରେ ପରୀକ୍ଷିତ ନ ହୋଇଛି ବା ଜାତୀୟତାକୁ ନିବିଡ଼ ଭାବରେ ଉପଲବ୍ଧି କରି ନ ପାରିଛି—ସେ କଦାପି ଜାତୀୟ-ରସ-ମାଧୁରୀ ବିଚକ୍ଷଣ ଭାବରେ ଫୁଟାଇ ପାରେନା । ଗୋପବନ୍ଧୁଙ୍କର ବେଶଭୂଷା, ଗ୍ଭଲିଚଳନ ଓ ଦୈନନ୍ଦିନ କ୍ରିୟାପ୍ରଣାଳୀ ଜାତୀୟତାର ଯେପରି ପ୍ରକୃତ ନିଦର୍ଶନ ସ୍ୱରୂପ, ସେପରି ତାଙ୍କର ସାହିତ୍ୟ ମଧ୍ୟ ସେହି ପନ୍ଥାର ପଥିକ ।

ଆହୁରି ସେ ବୁଝିଥିଲେ ଯେ ଜାତିକୁ ଗଢ଼ିବାକୁ ହେଲେ ଅଯ୍ୟମାରମ୍ଭରୁ ତାର ଭାଷା ଓ ସାହିତ୍ୟର ବହୁମୁଖୀ ବିକାଶ ପ୍ରତି

ମନୋନିବେଶ କରିବା କର୍ତ୍ତବ୍ୟ । ଭାଷା ଓ ସାହିତ୍ୟର ବିନା ଅଭିବୃଦ୍ଧିରେ ଜାତିର ଉନ୍ନତି ଆଶା କରିବା ଦିବାସ୍ୱପ୍ନ ମାତ୍ର । ତେଣୁ ତତ୍କାଳୀନ ଯୁଗର ଅନ୍ୟ ଏକ କବି ଲେଖିଛନ୍ତି—

"ଉଚ୍ଚ ହେବାପାଇଁ କର ଯେବେ ଆଶା
ଉଚ୍ଚ କର ଆଗ ନିଜ ମାତୃଭାଷା ।"

ଭାଷା ଭାବର ବାହକ ହୋଇଥିବାରୁ ତାହା ଯେତେ ମାର୍ଜିତ ଓ ଉନ୍ନତ ହୁଏ ଜାତିର ସୌଷ୍ଠବର ପୂର୍ଣ୍ଣ ବିକାଶ ସେତେ ପରିମାଣରେ ବୃଦ୍ଧି ହୋଇଥାଏ । ତେଣୁ ଜାତିକୁ ଗଢ଼ିବା ପୂର୍ବରୁ ତାର ଭାଷା ଓ ସାହିତ୍ୟକୁ ବହୁମୁଖୀ ଉନ୍ନତ ଚିନ୍ତାଦ୍ୱାରା ବିକାଶୋନ୍ମୁଖ କରିବା ହେଉଛି ଯେ କୌଣସି ଦେଶହିତୈଷୀ କବି ବା କଳାବିତ୍‌ମାନଙ୍କ ପ୍ରାରମ୍ଭିକ କର୍ମ ଓ ଧର୍ମ । ସେହିହେତୁ ସ୍ୱାଧୀନତା ବିନା ସେହି ସାହିତ୍ୟ ବା ଭାଷାର ପ୍ରାଚୁର୍ଯ୍ୟ ଅସମ୍ଭବ ଭାବି ସ୍ୱାଧୀନତା ପଥରେ ଯେତେ ଗାତ଼ ଅଛି ତହିଁରେ ନିଜର ମାଂସ ହାଡ଼ ମିଶାଇ ଦେବା ନିମନ୍ତେ ନିଜକୁ ଜଳାଞ୍ଜଳି ଦେଇଥିଲେ ଏବଂ ତାଙ୍କର ସେହି ମହତ୍ ଆଶାର ନେତୃତ୍ୱ ଯେପରି ଦେଶର ଅଗଣିତ ନରନାରୀ ବହନ କରି "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ମାତୃକାର ଉନ୍ମୟନ ଦିଗରେ ଜାଗି ଉଠିବେ ସେପରି ସେ ବିପ୍ଳବ ସ୍ୱରରେ ଆହ୍ୱାନ କରିଅଛନ୍ତି, ଯଥା—

"ସ୍ୱାଧୀନତା ପଥେ ତଳେ ହେଲେ ନର ।
ମୋ ଜୀବନ ଦାନେ ହେଉ ଅଗ୍ରସର ।।"

ଏହି ମନ୍ତ୍ରରେ ଦୀକ୍ଷିତ ହୋଇ ଆଗେଇଥିଲେ ଗୋପବନ୍ଧୁ— ତରୁଣ ଭାବ ପ୍ରବଣତାର ଉଦ୍ଦୀପନାରେ ଉଚ୍ଚାରଣ କରି "ଟିଣ ଶିଙ୍ଖେ ଲମ୍ଫ ରଖି ଗୃହଲିବ ମୁକର" ।

କାରଣ ବିନା ସ୍ୱାଧୀନତାରେ ଦେଶ, ଜାତି ତଥା ସାହିତ୍ୟର ଶ୍ରୀବୃଦ୍ଧି ଘଟିବା ଦୁରୂହ । ଏହି ପ୍ରସଙ୍ଗରେ Mazzin ଯଥାର୍ଥରେ କହିଅଛନ୍ତି, "Without a country and without liberty, we might, perhaps produce some prophets of art but no vital art. Literary independence was in our eyes the first step towards a very different species of independence and signified an appeal to the youth of the country to infuse some of their own new life into the latent hidden life, fermenting deep down in the heart of Italy."

ଏହି ମତର ବଶବର୍ତ୍ତୀ ହୋଇ କୌଶଳକ୍ରମେ ମାଜିନ ଯେପରି ବ୍ୟବସାୟଗତ ପତ୍ରିକା "ଇଣ୍ଡିକେଟର ଜେନୋଭିସ" ପ୍ରକାଶିତ କରି ତାଙ୍କ ସାହିତ୍ୟ ଜରିଆରେ ଇଟାଲିର ହୃଦ-ପୀଠରେ ଜାଳିଥିଲେ ମୁକ୍ତି-ମଶାଲ, ସେହିପରି ଗୋପବନ୍ଧୁ ନିଜର ସମ୍ପାଦକତ୍ୱରେ 'ସତ୍ୟବାଦୀ' ନାମକ ମାସିକ ସାହିତ୍ୟ ପତ୍ରିକା ବ୍ରହ୍ମପୁରସ୍ଥ 'ଆଶା ପ୍ରେସ'ରୁ ପ୍ରକାଶିତ କରି ସାହିତ୍ୟର ଅଙ୍ଗ-ସୌଷ୍ଠବ ଅଭିବୃଦ୍ଧିରେ ମନୋନିବେଶ କରିଥିଲେ, ଉତ୍କଳୀର ନିସ୍ପନ୍ଦ ହୃଦୟରେ ତାଙ୍କ ଉନ୍ମାଦନା ଜନ୍ମାଇଥିଲେ ଏବଂ ଯତ୍ପରୋନାସ୍ତି ଚେଷ୍ଟା କରୁଥିଲେ ଯେପରି ତାଙ୍କ ସ୍ୱାଦ ଆସ୍ୱାଦନରେ ଉତ୍କଳୀୟ ପ୍ରାଣ ମତୁଆଲ ହୁଏ ।

ସେହି ଦେଶାନୁରାଗର ଜ୍ୱଳନ୍ତ ପ୍ରମାଣ ମିଳେ "ସତ୍ୟବାଦୀ" ପତ୍ରିକାର ପ୍ରାରମ୍ଭିକ ସମ୍ପାଦକୀୟ ଆଲୋଚନାରେ । ସେଥିରେ ସେ ଯେଉଁ "ଆଦର୍ଶ ଓ ଆକାଙ୍କ୍ଷା" ଶୀର୍ଷକ

ଲେଖା ପ୍ରକାଶ କରଥିଲେ ତହିଁରେ ତାଙ୍କର ଜାତୀୟତାର ସ୍ୱତନ୍ତ୍ର ଦୃଷ୍ଟିକୋଣ ନିହିତ । ତାହା ହିଁ ସୁସ୍ପଷ୍ଟ ପ୍ରମାଣିତ କରେ, ଜାତିର ଅଭିବୃଦ୍ଧି ନିମିତ୍ତ ତାଙ୍କର ଆତ୍ମା କପରି ଅହରହ ଅକ୍ଲାନ୍ତ ପରିଶ୍ରମରେ ଲାଗି ପଡ଼ିଥିଲା କିମ୍ବା 'ମିଶୁ ମୋର ଦେହ ଏ ଦେଶ ମାଟିରେ' ବୃଥା ଲେଖା-ଗୁରୁତ୍ୱର୍ଯ୍ୟ ନ ହୋଇ କପରି ସେହି ଆଦର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରଥିଲା । ସେ ଲେଖିଥିଲେ— "ଜନ୍ମଭୂମିର ଉନ୍ନତିରେ ଯଥା-ସମ୍ଭବ ଆତ୍ମନିଯୋଗ କରି ପାରିଲେ ବିଶ୍ୱସେବା କରୁଁ ବୋଲି ମନେ କରି ଆଶ୍ୱସ୍ତ ହେବୁ । ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେ । ବରଂ ବିଶ୍ୱପ୍ରୀତି ବିହୀନ ପ୍ରାଣରେ ଜାତୀୟତା ଏବଂ ସ୍ୱଦେଶ ବାତ୍ସଲ୍ୟ ଅସମ୍ଭବ । ପୂର୍ବପୁରୁଷମାନଙ୍କର ପଥ ଏ କ୍ଷେତ୍ରରେ ଆମ୍ଭମାନଙ୍କର ଅନୁସରଣୀୟ । 'ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତଂ' ସଚରାଚର ଜଗତର ତର୍ପଣ ବିଧାନ ହିନ୍ଦୁ ଆପଣା ନିତ୍ୟ କର୍ତ୍ତବ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ହେଁ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' । ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତ ତଥା ବିଶ୍ୱସେବା କରିବୁ; ଉତ୍କଳ ଜାତିର ଉନ୍ନତିରେ ମାନବ ଜାତିର ଉନ୍ନତି ଦେଖିବୁ; ଉତ୍କଳ ପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ; ଉତ୍କଳ ହୃଦୟତନ୍ତ୍ରୀରେ ବିଶ୍ୱମାନବ ହୃଦୟର ଗୀତ ଶୁଣିବୁ । ଉତ୍କଳ ଭୂମିକୁ ଏହି ବିଶ୍ୱଭାବରେ ଅନୁପ୍ରାଣିତ କରି ଓଡ଼ିଆମାନଙ୍କ ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆ ଭାଷା ମୁଖରେ ବିଶ୍ୱ ଭାବରାଶିର ପ୍ରକାଶ କରାଇବାକୁ ହେବ । ଭିନ୍ନ ଭିନ୍ନ ଦେଶ ଓ ପ୍ରଦେଶମାନଙ୍କରେ ବିଭିନ୍ନ ସମୟର ମାନବ ଶକ୍ତି ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି, ମାନବ ପ୍ରତିଭା ଯେଉଁ ଶୋଭା ଚିତ୍ର ପରିସ୍ଫୁଟ କରିଅଛି, ମାନବ ପ୍ରଜ୍ଞା ଯେଉଁ ଆଲୋକ ପାଇଅଛି,

ମାନବ ଜୀବନ ଯେଉଁ ଉଚ୍ଚ ଆଦର୍ଶ ଦେଖାଇଅଛି, ସେ ସବୁକୁ ଓଡ଼ିଆ ସାହିତ୍ୟର ସମ୍ପଦୀଭୂତ କରିବାକୁ ହେବ । × × ×"

ଉପରୋକ୍ତ ଲେଖାରୁ ଅନୁଭୂତ ହୁଏ ଯେ ବିଶ୍ୱମାନବ ଜୀବନର କୈବଲ୍ୟ ଯେନ ଓଡ଼ିଆ ସାହିତ୍ୟ ଯେପରି ପରିପୁଷ୍ଟ ହୁଏ, ଓଡ଼ିଶାର ଶିଥିଳ ତନ୍ତ୍ରୀରେ ଜାତୀୟ-ପ୍ରୀତି-ଗୀତିକା ଗୁଞ୍ଜରିତ ହୁଏ, ସେ ତଦନୁଯାୟୀ ନିଜର କର୍ମଯୋଜନା ପ୍ରସ୍ତୁତ କରିଥିଲେ । ସେହିହେତୁରୁ 'ସତ୍ୟବାଦୀ' ଓ 'ସମାଜ' କାଗଜଦ୍ୱୟର ଆତ୍ମପ୍ରକାଶ ।

ଏହାହିଁ ଗୋପବନ୍ଧୁ ସାହିତ୍ୟ-ସାଧନାର ମୁଖ୍ୟତମ ଉଦ୍ଦେଶ୍ୟ । ଏଇଠି ବିଶ୍ୱର ମହତ୍ତ୍ୱ ଯେପରି ଗରୀୟାନ, ସ୍ୱଦେଶ-ବତ୍ସଳତା ମଧ୍ୟ ସେପରି ମହୀୟାନ । ବିଶ୍ୱପ୍ରୀତିରେ ବିହ୍ୱଳ ରହି ନିଜ ଜାତୀୟତାକୁ ସେ ଭୁଲି ନଥିଲେ, ଭଣ୍ଡାମି ରାଜନୀତିର ମୁଖା ପିନ୍ଧି ନୀଚ ସ୍ୱାର୍ଥ ସାଧନ ସକାଶେ ବିଶ୍ୱ-ପ୍ରୀତିର ଦୁହାଇ ଉଠାଉ ନଥିଲେ କିମ୍ବା ଜାତୀୟ ସ୍ୱାର୍ଥକୁ ବଳି ଦେଇ ବିଶ୍ୱ ପୃଷ୍ଠରେ ନିଜେ ମାର୍କାମରା ନେତା ହିସାବରେ କାଶ ଫୁଲପରି ବାସୁ ନଥିଲେ । ଗୋପବନ୍ଧୁ ସ୍ୱଦେଶ ଓ ବିଶ୍ୱପ୍ରୀତିକୁ ଏକାଧାରରେ ସମ୍ମିଶ୍ରିତ କରି ଉଭୟର କର୍ମ ସାଧନରେ ବରଂ ପ୍ରବୃତ୍ତ ଥିଲେ । ଏତଣୁ ତାହାର ଆଶୁ ଫଳ ପାଇଁ ବିଭୁଙ୍କ ପାଖରେ ମିନତି-ଭରା ଆକୁଳ କଣ୍ଠରେ ଗାଇଅଛନ୍ତି,—

"ସଂସାର ତୁମୁଳ ରଣ ପ୍ରାଙ୍ଗଣେ
ଉତ୍କଳର ଦୀନ ତନୟଗଣେ
ପଛରେ କେବେହେଁ ନ ପଡ଼ୁ ଦେବ
ଶ୍ରୀମୁଖରୁ ଏହି ଆଦେଶ ହେବ

ଯେବେ ଅପୂର୍ବ ଉତ୍ସାହ
ଭାରତୀୟ ମହା- ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ହେ ।"

ଉପରୋକ୍ତ ପଂକ୍ତି ଋଷିପ୍ରତିମ ଗୋପବନ୍ଧୁଙ୍କ ମହାନୁଭବତାର ଉତ୍କୃଷ୍ଟ ପରିଚୟସୂଚକ । ଆହୁରି ମଧ୍ୟ ଉତ୍କଳ ସମେତ ସାରା ବିଶ୍ୱକୁ ସମଦୃଷ୍ଟିରେ ଅବଲୋକନ କରି ଏକ ପରିବାରଭୁକ୍ତ ବ୍ୟକ୍ତି ହିସାବରେ ସେ ଗାଇ ଅଛନ୍ତି,—

"ପ୍ରେମ ଭାବ ଯାର ଅନ୍ତରେ ପୂରିତ
ସର୍ବ ପ୍ରାଣୀ-ହୃଦ ତା' ହୃଦେ ଅଙ୍କିତ
ସର୍ବ ଅନୁଭୂତି ସର୍ବଭୂତେ ତାର
ତା' ଦୃଷ୍ଟିରେ ବିଶ୍ୱ ଏକ ପରିବାର ।"

କିମ୍ବା

"ନିଜ ସୁଖ ପାଇଁ ଜାତ ନୁହେ ହିନ୍ଦୁ
ବିଶ୍ୱ-ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।"

× × ×

"ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧି ବିଶ୍ୱ-ହିତ ତେଜି ଅଭିମାନ ।"

ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ନିଜ ଦେଶରେ ଜାତୀୟତାର ପୁଣ୍ୟସ୍ରୋତ ସାହିତ୍ୟ ମାଧ୍ୟମରେ ପ୍ରବାହିତ କରିଥିଲେ, ଜାତୀୟ ଭୂଷଣରେ ଭୂଷିତ ହୋଇ ଯେପରି ସାହିତ୍ୟର ଅଭିବୃଦ୍ଧି ଓ ଶ୍ରୀବୃଦ୍ଧି ଘଟେ ସେଥିପ୍ରତି ମଧ୍ୟ ସୁତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରିଥିଲେ । ସେ ଶବ୍ଦର ଅଯଥା ଝଙ୍କାରରେ ସାହିତ୍ୟର ଅଙ୍ଗ-ସୌଷ୍ଠବକୁ ଭାରାକ୍ରାନ୍ତ ନ କରି ସରଳ ଓ ସୁବୋଧ୍ୟ ଭାଷା

ସାହାଯ୍ୟରେ ଜାତୀୟ ଗୁଣାବଳୀ ଗାଇ ଉଠିଛନ୍ତି । ମନେ ହୁଏ ତାଙ୍କର ଜୀବନର ଦୈନନ୍ଦିନ କ୍ରିୟାକଳାପ ଯେପରି ଜାତୀୟତାରେ ଓତପ୍ରୋତ ଭାବେ ବିଜଡ଼ିତ ଏବଂ ସରଳ ଓ ନିରାଡ଼ମ୍ବରପୂର୍ଣ୍ଣ, ତାଙ୍କର କବିତା ବା ସାହିତ୍ୟ ମଧ୍ୟ ସେପରି ପରିଗ୍ରହରେ ଜୀବନ୍ତ ଓ ସାବଲୀଳ ଥିଲା ।

ସେ ଆହୁରି ମଧ୍ୟ ଉପଲବ୍ଧି କରିପାରିଥିଲେ ଯେ ସାହିତ୍ୟରେ ଜାତୀୟତାର ବିକାଶ ଯେପରି ସମ୍ଭବ, ସାହିତ୍ୟିକ ସମାଲୋଚନାରେ ଜାତୀୟ ଜୀବନର ମହତ୍ତ୍ୱ ମଧ୍ୟ ସେପରି ବିକଶିତ । ସତ୍ ବା ପ୍ରକୃତ ସମାଲୋଚନା ଅଭାବରୁ ସାହିତ୍ୟ କ୍ଷେତ୍ର କଳୁଷିତ ହେବା ଅବଶ୍ୟମ୍ଭାବୀ । ତଦ୍ଦ୍ୱାରା ସମାଲୋଚକ ତଥା ପାଠକଶ୍ରେଣୀ ପଥଭ୍ରଷ୍ଟ ହୋଇ ଦେଶ ପକ୍ଷେ ଧୂମକେତୁ ସ୍ୱରୂପ ହେବା ବିଚିତ୍ର ନୁହେ । ତେଣୁ ସମାଲୋଚନାର ପ୍ରକୃତ ରୂପ ଓ ଲକ୍ଷଣ ଏବଂ ଉପକାରିତା ବୁଝାଇବାକୁ ଯାଇ ସେ କହିଅଛନ୍ତି— "ସମାଲୋଚନା ସାହିତ୍ୟର ମାପକାଠି । × × × ଦେଶ କାଳ ପାତ୍ର ବିବେଚନାରେ ମତ ନିୟମିତ କରିବା ବୁଦ୍ଧିମାନର କାର୍ଯ୍ୟ ହୋଇପାରେ । କିନ୍ତୁ ସାହିତ୍ୟିକ ଆଦର୍ଶର ଲକ୍ଷ୍ୟ ସ୍ଥିର ରଖି ସମାଲୋଚନାର ମାନଦଣ୍ଡରେ ସାହିତ୍ୟର ଗତି ସଂଯତ ଓ ନିୟନ୍ତ୍ରିତ କରିବା ହିଁ ପ୍ରକୃତ ସମାଲୋଚନାର କାର୍ଯ୍ୟ । ଆହୁରି ସ୍ମରଣ ରଖିବାକୁ ହେବ ଯେ ଲେଖକ ସଙ୍ଗେ ସମପ୍ରାଣତା ଓ ସହାନୁଭୂତି ସମାଲୋଚନାର ପ୍ରଧାନ ଉପାଦାନ ଓ ମୌଳିକ ଭିତ୍ତି । ଏହିପରି ଜଣେ ଜଣେ ସମାଲୋଚକ ପାଇଲେ ଲେଖକ କୃତାର୍ଥ ହୁଅନ୍ତି । ମହାକବି ଭବଭୂତି କହିଥିଲେ, "ଉତ୍ପତ୍ସ୍ୟତେ ଚ ମମ କୋଽପି ସମାନ ଧର୍ମା ।"

ଏପରି ସୁନ୍ଦର ଆଦର୍ଶ ଅବଧାରି ପରିବେଷଣ କରି ଗୋପବନ୍ଧୁ କମ୍ କୃତିତ୍ୱର ପରିଚୟ ଦେଇ ନାହାନ୍ତି ।

ବାଲ୍ୟାବସ୍ଥାର ଯେଉଁ କବି ମନୋଭାବ ଗୋପବନ୍ଧୁଙ୍କ ମନ-ନିକୁଞ୍ଜରେ ସଦ୍ୟ କଳିକାର ରୂପ ଦେଇ ବାଲ୍ୟ ଚପଳତା ପ୍ରଭାବରେ କମ୍ବା ଘଟଣା ତରଙ୍ଗର ଇତସ୍ତତଃ ବିକ୍ଷିପ୍ତିରେ ଲୁକ୍କାୟିତ ହୋଇଥିଲା, ଏହିଠି ହିଁ ତାର ପୂର୍ଣ୍ଣ ପ୍ରସ୍ଫୁଟନ ଓ ବିକାଶନ । କହିବାକୁ ଗଲେ ଏହି ସାହିତ୍ୟ କଳାକୁଶଳତା ହିଁ ତାଙ୍କର ଗଭୀର ପାଣ୍ଡିତ୍ୟ ଓ ବିଦ୍ୱତ୍ତାର ଶ୍ରେଷ୍ଠ ରୂପକ ଏବଂ କବିତ୍ୱର ଶ୍ରେଷ୍ଠ ସାମଗ୍ରୀ । **Emerson**ଙ୍କ ଭାଷାର ଗୌରବତା ଏହିଠି ହିଁ ବେଶ୍ ପ୍ରକଟିତ । ଯଥା—**"The poets are the liberating God."**

ବାସ୍ତବିକ ପଣ୍ଡିତ ଗୋପବନ୍ଧୁ ଜାତିୟତାର ମାନ ବଢ଼ାଇବା ପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି ଓ ଅଦମ୍ୟ ସାହସ ଦର୍ଶାଇଛନ୍ତି ତାହା ଅଦ୍ଭୁତ । ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ କର୍ମକର୍ତ୍ତା ହିସାବରେ ଅହରହ ଲିପ୍ତ ଥିଲେ ସୁଦ୍ଧା ସେଲି (**Shelly**)ଙ୍କ **Sky Lark** ଭଳି ସ୍ୱର୍ଗୀୟ ସ୍ୱପ୍ନରେ ବିଭୋର ନ ରହି **Wordsworth**ଙ୍କ **'Sky Lark'** ଯେପରି ଜନ୍ମ-ମୃତ୍ୟୁ-କ୍ଲିଷ୍ଟ ଧରାକୁ ଭୁଲି ନଥିଲା ସ୍ୱର୍ଗ ସୌଖ୍ୟରୁ ବଞ୍ଚିତ ନ ହୋଇ; ସେପରି ସେ ବିଶ୍ୱହିତ ପାଇଁ ପ୍ରାଣବଳି ଦେଲେ ସୁଦ୍ଧା ମଳିମୁଣ୍ଡିଆ ଉତ୍କଳୀଙ୍କୁ ତାଙ୍କ ହୃଦୟରୁ ପାସୋରି ଦେଇ ନଥିଲେ— ଉତ୍କଳ ଯେହେତୁ ତାଙ୍କର ପ୍ରାଣରୁ ବଳି ପ୍ରିୟତମ । ଉତ୍କଳର ପାଣି, ପବନ ଯଥାକ୍ରମେ ତାଙ୍କର କଳୁଷହାରିଣୀ ସ୍ୱର୍ଗ-ଜାହ୍ନବୀ ଏବଂ ଚିର ପ୍ରବାହିତ ମଧୁ ମଳୟର ଅମୃତ ପରଶ । ଛବିଳି ଉତ୍କଳର ବୃକ୍ଷରୁ ଶ୍ୟାମଳିମା, ବନ, ଗିରି, ଗୁହା ତାଙ୍କର ଯେପରି ନନ୍ଦନ କାନନ ଏବଂ ସେହି କାନନର ଗୋଟିଏ ଗୋଟିଏ ପ୍ରସ୍ଫୁଟିତ

ପାରିଜାତ ରୂପେ ଯେପରି ପ୍ରତ୍ୟେକ ଉତ୍କଳୀ ସୁଶୋଭିତ । ତେଣୁ ସେ କହିଅଛନ୍ତି,—

"ଜଗତ-ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଥିଲେ ଯହିଁ ତହିଁ ଭାରତ-ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ-ଶିଳା ଶାଳଗ୍ରାମ
ପ୍ରତିଷ୍ଠାନ ମୋର ପ୍ରିୟ ପୁରୀ ଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।"

ଏଇଟି ଗୋପବନ୍ଧୁଙ୍କ ବିଶ୍ୱପ୍ରୀତିର ମହାନ୍ ଆଦର୍ଶ । ପୁରୀଧାମର ପ୍ରତ୍ୟେକ ଅଣୁ ପରମାଣୁ ଯେପରି ପବିତ୍ର ଜାହ୍ନବୀ ସଲିଳ ଦ୍ୱାରା ବିଧୌତ, ବିଶ୍ୱର ପ୍ରତ୍ୟେକ ସ୍ଥଳୀ ସେପରି ପବିତ୍ରତର ଓ ପୂତତମ ତାଙ୍କର ଦିବ୍ୟଦୃଷ୍ଟିରେ ପ୍ରତିଭାତ ହୋଇଛି ।

ଦେଶ ପ୍ରତି ଏପରି ଅଗାଧ ପ୍ରୀତି ଓ ନିଷ୍କପଟ ମମତା ଯେପରି ଚରମତା ହାସଲ କରିଛି ବୋଧହୁଏ ଅନ୍ୟତ୍ର କେଉଁଠି ସମ୍ଭବ ହୋଇ ନ ଥିବ । ଦୁର୍ଭିକ୍ଷ ପ୍ରପୀଡ଼ିତ, ଦାରିଦ୍ର୍ୟର ନିଷ୍ଠୁର କଷାଘାତରେ ନିଷ୍ପେଷିତ ବିକଟାଳ ରୂପୀ ସାଧାରଣ ମନୁଷ୍ୟ ଦେହରେ ସେ 'ସ୍ୱର୍ଗୀୟ-ଆଭା' ଦେଖି ଯେପରି ବିମୁଗ୍ଧ ହୋଇଛନ୍ତି ଏବଂ ସେହି ନର-କଙ୍କାଳକୁ ଈଶ୍ୱରଙ୍କ ପ୍ରତିନିଧି ରୂପେ ବିଶ୍ୱ ଦରବାରରେ ଆସୀନ କରାଇ ପୂଜା ନୈବେଦ୍ୟ ବାଢ଼ିଛନ୍ତି—ତାହା ଯିମିତି ଅଦ୍ଭୁତ ସିମିତି ଅଲୌକିକ ମଧ୍ୟ । ଏହା କଣ ସମ୍ଭବ, ଯା' ହୃଦୟ ବିଶ୍ୱ-ଜୀବନ-ସ୍ପନ୍ଦନ ଉପଭୋଗ କରି

ନ ପାରନ୍ତି ! ! ଏହା କଣ ସତ୍ୟ, ଯାଁ ହୃଦୟ ମହାମାନବତ୍ୱର ସତ୍ତା ପଦେ ପଦେ ଦେଖି ନ ପାରନ୍ତି ! ! !

**'Service to the humanity is service to God'** ଅର୍ଥାତ୍ ମାନବର ସେବାହିଁ ପରମାତ୍ମାଙ୍କ ସେବାର ରୂପାନ୍ତର ମାତ୍ର—ଏହି ବାକ୍ୟର ସତ୍ୟତା ଏହଠି ସମୁଜ୍ଜ୍ୱଳ ଭାବେ ଉଦ୍ଭାସିତ । କାରଣ ମାନବ ଯେ ନରରୂପୀ ନାରାୟଣ । ଯେଉଁ ପ୍ରଜ୍ଞାଲୋକରେ ମାନବ ନିଜ ଜୀବନପୋତକୁ ଚଳାଇ ଦିବ୍ୟାସନରେ ଆସୀନ ହୁଏ, ସେହି ଶକ୍ତି ଯେ ଐଶୀ ଶକ୍ତ୍ୟାଲୋକର ରୂପାନ୍ତରିତ, କହିଲେ ବାହୁଲ୍ୟ ହେବ ନାହିଁ । ଯେତେ ଋଷି ମହର୍ଷି ଦିବ୍ୟ ଜୀବନ ଲଭ କରି ପ୍ରାତଃସ୍ମରଣୀୟ ହୋଇଛନ୍ତି ଏହି ପ୍ରଜ୍ଞାଲୋକ ଯେ ସେମାନଙ୍କର ଗନ୍ତବ୍ୟ ପଥରେ ତୋଳିଛି କୈବଲ୍ୟ, ଦିବ୍ୟତା ଓ ପୁଣ୍ୟତା । ସେଥିଯୋଗୁଁ ମନୁଷ୍ୟ ହେଉଛି ଜୀବଶ୍ରେଷ୍ଠ, ଯେ କି ବିଶ୍ୱନିୟନ୍ତାଙ୍କର ପ୍ରକୃତ ଉତ୍ତରାଧିକାରୀ ପୁଣି କ୍ଷୀରାବ୍ଧି ପ୍ରକ୍ଷାଳିତ ଅନନ୍ତ-ନାଗ-ଶଯ୍ୟାଶାୟୀ ନାରାୟଣଙ୍କ ଜୀବନ୍ତ ପ୍ରତିମୂର୍ତ୍ତି । ଏଥିଯୋଗୁଁ ଆଧୁନିକ ଯୁଗର ପ୍ରାଚ୍ୟ ମନୀଷୀ ସ୍ୱାମୀ ବିବେକାନନ୍ଦଜୀ ଯଥାର୍ଥରେ କହିଅଛନ୍ତି— **"You may invent an image through which to worship God; but a better image already exists in the living-man".** ତେଣୁ **divine life** ପ୍ରତିଷ୍ଠାର ସୂକ୍ଷ୍ମ ଉପାୟ ହେଉଛି ନର-ନାରାୟଣଙ୍କ ପଦାବ୍ଜରେ ହୃଦୟର ପୂଜାର୍ଘ୍ୟ ସମର୍ପିବା । ସେହି ଦୃଷ୍ଟିକୋଣରେ ଉତ୍କଳ ବାଣୀପୀଠର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ ସ୍ୱନାମଧନ୍ୟ କବି ଡ଼ାଃ ମାନସିଂହ ବିପ୍ଳବୀ ସ୍ୱର ଉଠାଇ ଗାଇଅଛନ୍ତି,—

"କାଷ୍ଠ ପାଷାଣ ନ ପୂଜ ପୂଜ ଜୀବନ୍ତ ଦେବତା
ଯା' ଆଖିରୁ ଲୁହ ଯାଏ ବହି କହିଦେଲେ ପଦେ ମଧୁ କଥା ।
ବନ୍ଦ କର ମନ୍ତ୍ର ପାଠ ତବ ବନ୍ଦ କର କର୍ପୂର ଆରତି
ଦେଉଳ ବାହାରେ ଦେବତା ହାତ ପସାରି ଉଭା ରହିଛନ୍ତି ।

× × × ×

ଦେବ ଭୋଗ ନରନ୍ନରେ ଦିଅ, ଦେବ ସେବା ହେଉ ମାନବରେ ।"

ସେହି ଦିବ୍ୟାନୁଭୂତିରେ ଗୋପବନ୍ଧୁ ସାଧାରଣ ମାନବକୁ ଦେବତା ତୁଲ୍ୟ ପୂଜା କରୁଥିଲେ । ମାନବାତ୍ମା ଯେ ସ୍ୱୟମ୍ଭୂ ଶଙ୍କରଙ୍କର ପ୍ରତିଫଳନ, ଏଥିରେ ସେ ବିଶ୍ୱାସ କରୁଥିଲେ ଏବଂ ସେହି ନରକଙ୍କାଳ-ନାରାୟଣଙ୍କର ଅବିଚ୍ଛେଦ୍ୟ ସମ୍ବନ୍ଧରେ ଆସି ନିଜକୁ ସେମାନଙ୍କର ଦୁଃଖ ଶୋକରେ ମିଶାଇ ଦେଇଥିଲେ, ସେମାନଙ୍କର ମର୍ମନ୍ତୁଦ କ୍ରନ୍ଦନରେ ଲୁହ ନ କାନ୍ଦି କାନ୍ଦିଥିଲେ ଲହୁ । ତେଣୁ ସେ ସେମାନଙ୍କର ବାସ୍ତବ ଚିତ୍ର ସାହିତ୍ୟ କ୍ଷେତ୍ରରେ ଅତି ସୂକ୍ଷ୍ମଭାବେ ପ୍ରତିଫଳିତ କରି ଅଛନ୍ତି—ଯେଉଁ ବାସ୍ତବତାକୁ ଆମେ **Photographic Realism** ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଉଦାହରଣ ସ୍ୱରୂପ—

"ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ
ଉଡ଼ିଏ ତା' ଭୂତ ପଡ଼ିଏ ଶୁଣାନେ ।
ଥିଲେ ଯେହୁ ମଲ୍ଲ ଉତ୍କଳ ସୈନିକ
ପାଇକ ପଧାନ, ମାଗୁଛନ୍ତି ଭିକ ।

× × ×

ଉତ୍କଳର ଯେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।

ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।

×  ×  ×

ଚିକିତ୍ସା ନ ପାଇ ଘର କୋଣେ ପଡ଼ି
ରୋଗେ ଅନ୍ତଃପୁରେ କେ ବା ମରେ ଗଡ଼ି ।
ଉଦର ଜ୍ୱାଳାରେ କେତେ ନରନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ଓହ କାହିଁ ବା ଗୃହଲିଆ
ଶ୍ମଶାନ ପରାଏ ଦିଶେ ନଗ୍ରଚିଆ ।"

ପୁଣି ସାମନ୍ତବାଦୀ ଶାସନର ନିର୍ମମ ଅତ୍ୟାଚାର ଓ ଅମାନୁଷିକ ନିର୍ଯ୍ୟାତନାପ୍ରଣାଳୀରେ ତାଙ୍କର ଦରଦୀ ପ୍ରାଣ ଆକୁଳିତ କଣ୍ଠରେ ବିପ୍ଳବ ଧ୍ୱନି ଉଠାଇଛି । ତାହା ଯେତେ ମର୍ମସ୍ପର୍ଶୀ ସେତେ ନିବିଡ଼ ବାସ୍ତବତାର ପ୍ରତିଫଳନ, ଯଥା—

"ଯମଦୂତ ପ୍ରାଏ କ୍ରୂର ରାଜଥାଟ
ବୁଲନ୍ତି ରୌଦ୍ରେ ଗ୍ରାମ, ହାଟ, ବାଟ ।
ଲୁଟନ୍ତି ପରଜା ଘର ବାଡ଼ି ଖେତ
ମାରନ୍ତି ଗୁପୁଡ଼ା କାହାକୁ ବା ବେତ ।

ପୁଣି ଦେଖି କହିଅଛନ୍ତି—

"ଶାନ୍ତି, ସୁଶାସନ ନାମେ ପଶୁ ଅତ୍ୟାଚାର
ସତ୍ୟ, ସ୍ୱାଧୀନତା ଶିରେ ଉତ୍କଟ ପ୍ରହାର ।
କେତେ କାରାଗାରେ କେତେ ଘୋର ନିର୍ଯ୍ୟାତନ
କେତେ ସାଧୁହତ୍ୟା କେତେ ବୀର ନିଷ୍ପେଷଣ ।"

କମ୍ପା

"ଅର୍ଜନ୍ତି ଯା' ଭୁଣ୍ଡେ ମାର ମୁଣ୍ଡଝାଳ
ଦୁଷ୍ଟ ମହାଜନ, ଗ୍ରାମ କଣ୍ଟ ଆଳ
ପ୍ରଜାରକ୍ତ ଶୋଷି କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।"

ଆହୁରି—

"ଭାରତ ଶାସନେ କନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ' ରାଜ୍ୟେ ଅମାତ୍ୟ ସଂସ୍ଥା ରାଜମାତ୍ର ଯନ୍ତ୍ର ।
କାହିଁ ଏଥି ରାଜା ? ଯେ ନଉକର ସାହି
ପ୍ରଜା ସୁଖ ଶାନ୍ତି ନାମେ ବୃଥା ଧର୍ମ ଦ୍ୱାହି ।
ପ୍ରଜାହିତ ପ୍ରଜାମତ ଛଳନା କେବଳ
ପ୍ରେଷ୍ୟ ଗୋଷ୍ଠୀ ଇଚ୍ଛାଧୀନେ ଏ ଶାସନ କଳ ।"

ପୁଣି ଜାତିର ଜୀବନର ଶୋଚନୀୟ ପରିଣାମରେ ଦୁଃଖାତୁର ହୋଇ କହିଛନ୍ତି—

"ଏହି ଯେ ସମ୍ମୁଖେ ବାରବାଟୀ ପଦା
ଭାଙ୍ଗିଅଛି ଯହିଁ ଲକ୍ଷ ଲକ୍ଷ ଗଦା ।
ଥିଲା ଯେଉଁ ବୀର ବିହାର ପ୍ରାଙ୍ଗଣ
ଭ୍ରମେ ତହିଁ ଆଜ ଶ୍ୱାନ ଶିବାଗଣ ।
ଥିଲା ଯହିଁ କାଳେ ଗମ୍ଭୀର ପରିଖା
ଟେକିଛି କୋମଳ ଶସ୍ୟ ତହିଁ ଶିଖା ।"

କମ୍ବା

"ଦେଖିଥିବ ତହିଁ ବାରବାଟୀ ଦଶା
କ ବେଦନା ଥିବ ମରମେ ବାଧି

ଉତ୍କଳର ବୀର ବିହାର ପ୍ରାଙ୍ଗଣ
ଏବେ ସେ ଉତ୍କଳ ଶୌର୍ଯ୍ୟ-ସମାଧି ।"

ପୁଣି ଧର୍ମପ୍ରାଣ ଉତ୍କଳୀୟ ପବିତ୍ର ପୀଠ ଦେବାଳୟର ବିକୃତ ରୂପ ଦେଖି ମର୍ମାହତ କଣ୍ଠରେ ଗାଇ ଅଛନ୍ତି—

"ଶକ୍ତି ଗୁଡ଼ି ବ୍ୟଙ୍ଗ କେତେ ଶିବଲିଙ୍ଗ
ପଡ଼ିଛନ୍ତି କାହିଁ ତା' ପରିଚୟ
ରହିଛି କେବଳ ଐଶ୍ୱର୍ଯ୍ୟର ଛାୟା
କି ବିଭବ ଆହା କି ବିପର୍ଯ୍ୟୟ ।"

ଉପରୋକ୍ତ ଉଦ୍ଧୃତାଂଶଗୁଡ଼ିକରେ ଯେଉଁ ବାସ୍ତବ ଚିତ୍ର ପ୍ରକଟିତ ହୋଇଛି, ତାହା ନିର୍ଭୀକ ସତ୍ୟତାର ପ୍ରତୀକ । କାରଣ ସେହି ଚିତ୍ର ବାହ୍ୟାଡ଼ମ୍ବରର ପ୍ରହେଳିକା ନୁହେ, ନିଷ୍ଠୁର ବାସ୍ତବତାର କର୍କଶ ପ୍ରହାର ଜନିତ ହୃଦୟର ଉଦ୍‌ବେଳିତ ଭାବୋଚ୍ଛ୍ୱାସ । କାହିଁକିନା, ଯାହା ସେ ଅଙ୍ଗେ ଲିଭାଇଛନ୍ତି ତାହା-ଏକା କବିତାରେ ରୂପାୟିତ କରିଅଛନ୍ତି । ତେଣୁ ସେ କହିଅଛନ୍ତି, ଯଥା—

"ଅଙ୍ଗେ ଲିଭାଇଛି କେତେ କି ଅବସ୍ଥା
ଅନ୍ନବସ୍ତ୍ର ଆଉ ହେବ କି ହେ ଶସ୍ତା ।
ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ
ପ୍ରଜାକୁଳ କ୍ରମେ ଉଜୁଡ଼ିଲେଣି ଅସ୍ତ ।
କେତେ ନାମେ କେତେ ପ୍ରକାରରେ କର
କେତେ ପ୍ରଜାଙ୍କର ଭାଙ୍ଗିଲେଣି ଘର ।
ଖାଇବା ବାସନ ହେଉଛି ନିଲାମ
ତେତେବେ ହେଲେ ନାହିଁ କରର ବିରାମ ।"

ଯେଉଁମାନେ ଗୋପବନ୍ଧୁଙ୍କ ସ୍ୱର୍ଗୀୟ ଚେତନାକୁ କଳ୍ପନା ବିଳାସର ବିଭବ ବୋଲି କହୁଥିଲେ, ଏହି ଉକ୍ତିରେ ସେମାନେ ବୋଧହୁଏ ସଠିକ ଉତ୍ତର ପାଇଛନ୍ତି । କାରଣ ଦେଶର ରାଜନୀତିକ, ସାମାଜିକ ଓ ଧାର୍ମିକ ଜୀବନର ଶୋଚନୀୟ ପରିଣତି ଏବଂ ପୂର୍ବପୁରୁଷଙ୍କ ଶୌର୍ଯ୍ୟ-ବୀର୍ଯ୍ୟ-ଗାମ୍ଭୀର୍ଯ୍ୟ-କୀର୍ତ୍ତି ସମୂହର ମହାଶ୍ମଶାନ ଯେତେବେଳେ ତାଙ୍କର ହୃଦୟରେ ଆଣିଛି ତୀବ୍ର ଯନ୍ତ୍ରଣା ଓ ବେଦନା, ସେଇଠି କିଣ ସମ୍ଭବ ଦେଶପ୍ରାଣ ହୃଦୟରେ କଳ୍ପନା ବିଳାସର ଅବକାଶ ! ସେ ନିଜେ ସ୍ୱୀକାର କରି କହିଅଛନ୍ତି ପରି ମୁକ୍ତକଣ୍ଠରେ,—

"ଅଳପ ବୟସେ ମୋର ବହୁ ଅନୁଭବ
ହୃଦ ନିଷ୍ପେଷିତ ମୋର ବିରହ କଷଣେ
ଛୁଟିଛି ମୋ କଳ୍ପନାର ବିଳାସ ବୈଭବ
ଦେଖେ ମୁଁ ଜୀବନ ଗତି ବାସ୍ତବ ନୟନେ ।"

ଏଇଠି କବିଙ୍କର ସ୍ନିଗ୍ଧ ସ୍ୱପ୍ନ ଭାଙ୍ଗି ଯାଇଛି । କଳ୍ପନା-ସୁନ୍ଦରୀର ମଧୁର ଆଲୋଡ଼ନ ଜନ-ଦେବତାର ହୃଦଫଟା ଆର୍ତ୍ତନାଦରେ ଭରପୂର ହୋଇ ବାସ୍ତବତା ପ୍ରତି ଇଙ୍ଗିତ ଦେଇଛି; ଯିମିତି ମେଘପୁଞ୍ଜିର ଅବିଶ୍ରାନ୍ତ ଧାରାପାତ ବାସନ୍ତୀ ସନ୍ଧ୍ୟାର ବିଭବକୁ ଲୁଟାଇ ବାସ୍ତବବାଦୀ କରାଏ—ମଣିଷକୁ । ଅତଏବ କବି ସେଇଠି ହୋଇଛନ୍ତି ନିଷ୍ଠୁର ବାସ୍ତବମୁଖୀ କିମ୍ବା ବାସ୍ତବ ସାହିତ୍ୟ ଗବେଷଣାରେ ଉଦ୍‌ବୁଦ୍ଧ, ଯେହେତୁ ତାହା କବିର ଧର୍ମ । ସମ୍ୟକ୍+ହିତ=ସାହିତ୍ୟ ହିଁ ସାହିତ୍ୟ ପଦବାଚ୍ୟ । କାରଣ ତାହା ଦୁନିଆର ପ୍ରକୃତ ଛବି ଜନସାଧାରଣଙ୍କ ସମ୍ମୁଖରେ ଚିତ୍ରିତ କରି 'ଜୀବନ ମଣିନ୍ତ୍ର ଅତି ସୁଖମୟ' କିମ୍ବା ସ୍ୱାର୍ଥାନ୍ୱେଷୀ

ପ୍ରାଣ ପ୍ରତି ଏକ ନିଷ୍ଠୁର ପ୍ରହାର ଦେଇ ଦୁନିଆର ଜୀବନ ସହିତ ମିଳିତ ହେବାକୁ ଦେଇଥାଏ ପ୍ରେରଣା ଓ ମମତା ।

ତେଣୁ ଗୋପବନ୍ଧୁ ନିଜ କବିତାରେ ଏହି ଦୁଃଖ-କ୍ଲେଶ-କାରୁଣ୍ୟଭରା ସାମାଜିକ ଜୀବନର ନିରାଟ ସତ୍ୟ ଯେପରି ପ୍ରତିପାଦିତ କରିଛନ୍ତି ସେପରି ଅଭାବଗ୍ରସ୍ତ, ତିକ୍ତ, ଲାଞ୍ଛନାରେ ମର୍ମନ୍ତୁଦ ଏବଂ କାରୁଣ୍ୟ-ତରଙ୍ଗାୟିତ ଜୀବନ ପ୍ରତି ଅନ୍ୟ ହୃଦୟରେ ଆଣିଛନ୍ତି ସହାନୁଭୂତି ଓ ମମତା । କାରଣ କାବ୍ୟର ଦୁଃଖ ବେଦନାଦାୟକ ନୁହେ କିମ୍ବା କାବ୍ୟର ସୁଖ ବିଷୟାଭିଭୂତ ଆନନ୍ଦ ନୁହେ । ଅବଶ୍ୟ କାବ୍ୟର ଦୁଃଖ ମର୍ମସ୍ପର୍ଶୀ ହୋଇ ନିଦାରୁଣ ହୃଦୟରୁ ନିର୍ଗତ କରିପାରେ—ଉଷ୍ଣ ଲୋତକଧାରା । କିନ୍ତୁ ସେହି ଦୁଃଖ ଭିତରେ ପ୍ରାଣ କି ଅଲୌକିକ ଆନନ୍ଦ ଉପଲବ୍ଧି କରେ କେଜାଣି ତାହା ପୁନଃ ପୁନଃ ପଢ଼ିବାରେ ମନ ସତତ ପାଗଳ ହୋଇ ଉଠିଥାଏ । କାହିଁକି ? ସେ ବେଦନା ଭିତରେ ଅଛି ଯେହେତୁ ଅମିୟାନନ୍ଦ, ଯାହାକି ଲୌକିକ ନୁହେ ତପସ୍ୟାର ବହିର୍ମୁଖୀ ଦାରୁଣ କଷଣ ଭିତରେ ଯେପରି ରହିଛି ସ୍ୱର୍ଗୀୟ ଆଶୀର୍ବାଦ, ସେପରି କାବ୍ୟକ ଦୁଃଖରେ ମଧ୍ୟ ନିହିତ ଅଛି ଅପାର ଆନନ୍ଦ । ଦୃଷ୍ଟାନ୍ତ ସ୍ୱରୂପ, ବିଶ୍ୱର ଶ୍ରେଷ୍ଠ କରୁଣ ରସାତ୍ମକ କାବ୍ୟ ରାମାୟଣ ପୁଣି ଟୀକା ଗୋବିନ୍ଦଚନ୍ଦ୍ର ଓ କୃଷ୍ଣଙ୍କର ମଥୁରା ପ୍ରସ୍ଥାଗମନ ସମୟରେ ଯଶୋଦା ଆଦି ଗୋପବାଳାଙ୍କର ଯେଉଁ ମର୍ମଭେଦୀ ରୋଦନ ସେହି ଦୁଃଖରେ ଆମ୍ଭେମାନେ ଯେତେ ଅଭିଭୂତ ହେଲେ ମଧ୍ୟ ତତ୍‌ପ୍ରତି ଆମ୍ଭମାନଙ୍କର ପଠନେଚ୍ଛା ଓ ଶ୍ରବଣେଚ୍ଛା ସତତ ଆକୃଷ୍ଟ ହେଉଛି । ସେପରି ନୋହିଥିଲେ ଯୁଗ ନିର୍ବିଶେଷରେ ସାହିତ୍ୟ ହିସାବରେ ତା'ର ଆଦର ଆମର ଶିରାପ୍ରଶିରାଗତ ହୋଇ ପାରିନଥାନ୍ତା—ଯେହେତୁ ସେହି ଦୁଃଖ

ବିଷୟ ସମ୍ବନ୍ଧୀୟ ନୁହେଁ କିମ୍ବା କୌଣସି ଅନିଷ୍ଟର କାରଣ ସୁଦ୍ଧା ନୁହେ । ତାହା ଦୁଃଖରୂପୀ ସୁଖାନନ୍ଦ ମୂର୍ତ୍ତିର ଆଧାର । ତେଣୁ ଦୁଃଖର ତୀବ୍ରାନୁଭୂତ ମଧ୍ୟ ଦେଇ ଯେଉଁ ସୁଖସ୍ରୋତ ପ୍ରବାହିତ ତାହାକୁ ଉପଲବ୍ଧି କରିବା ପାଇଁ ଜୀବନ ସଦାସର୍ବଦା ତତ୍ପର । ଏହି ପ୍ରସଙ୍ଗରେ ଜଣେ ବିଖ୍ୟାତ ଆମେରିକାନ୍ ଲେଖକ ଗୋଟିଏ ପଦ୍ୟରେ ଲେଖିଅଛନ୍ତି—

**"O heart that break and give no sign**
**Save whitening lip and fading tresses,**
**Till death pours out his cordial wine**
**Slow-dropped from misery's crushing presses.**
**If singing breath or echoing chord**
**To every hidden pang were given**
**What endless melodies were poured**
**As sad as earth, as sweet as heaven."**

ଅର୍ଥାତ୍ ସଂକ୍ଷିପ୍ତରେ କହିବାକୁ ଗଲେ—ଯଦିଓ ପ୍ରତ୍ୟେକ ଅପ୍ରକାଶିତ ଦୁଃଖ ପ୍ରକାଶିତ ହୁଅନ୍ତା ତେବେ ଆହା ! କିଂଭୂତ ମଧୁମୟ ଓ ଦୁଃଖମୟ ସଙ୍ଗୀତ ଅଜସ୍ର ଧାରାରେ ବହୁ ନଥାନ୍ତା ।

ଯେହେତୁ ଦୁଃଖଜନିତ ମଧୁମୟ ପ୍ରବାହ ହିଁ ଆତ୍ମାର ଆନନ୍ଦରୂପୀ ବ୍ରହ୍ମ ପୁଣି ଅନ୍ୟ ଦିଗରେ ନିଜତ୍ୱ ଭିତରେ ବିଶେଷତଃ ଜାତିର ଆତ୍ମାକୁ ଚହ୍ନିବାର ପ୍ରୟାସ ମଧ୍ୟ । ଏହିଠି ହିଁ ସାହିତ୍ୟ କଳାର ଉତ୍କର୍ଷତା; କାରଣ ନିଜତ୍ୱ ମଧ୍ୟ ଦେଇ ବିଶ୍ୱ ତଥା ସାମୂହିକ ମାନବ ହୃଦୟର ସ୍ପନ୍ଦନ ହୃଦ୍‌ବୋଧ କରାଇବା ହିଁ ସାହିତ୍ୟର କର୍ମସୂଚୀ ମଧ୍ୟରୁ ଅନ୍ୟତମ । ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ ଏହାକୁ ସ୍ୱୀକାର କରିଅଛନ୍ତି ।

ଗୋପବନ୍ଧୁଙ୍କର ଉପରୋକ୍ତ ପଂକ୍ତିଗୁଡ଼ିକ ପାଠ କଲେ ପାଠକ ହୃଦୟ ଦୁଃଖକ୍ଳେଶଜର୍ଜରିତ ହୃଦୟର ବିକ୍ଷୋଭ କମ୍ପା ନିରନ୍ନ ପେଟର ବ୍ୟାକୁଳତା ଅବା ଯମପାଶଦଣ୍ଡଜନିତ ମର୍ମନ୍ତୁଦ ଚିତ୍କାର ପ୍ରତି ଉଦାସୀନ ନ ରହି ନିଜର ଦୁଃଖ କଷ୍ଟ ଭୁଲି ସଚେତନ ହୋଇଥାଏ ନିଜ ଜାତିଭାଇର ସେହି ଦୁଃଖ ଦୁର୍ଦ୍ଦଶା ମୋଚନାର୍ଥେ । ଏହିଠି ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଜଣାଯାଏ ଯେ ଗୋପବନ୍ଧୁଙ୍କର ବିରାଟ ବ୍ୟକ୍ତିତ୍ୱ ଯେପରି ପାଠକର ପ୍ରତି ଶିରାପ୍ରଶିରାରେ ସଂଜୀବିତ ହୋଇ ଦେଶପ୍ରାଣତା ପାଇଁ ଇଙ୍ଗିତ ଦେଉଛି; ଆତ୍ମା ଯେପରି ପାଠକର ସଂକୀର୍ଣ୍ଣ ଗିରି ନିର୍ଝରିଣୀ ଭୁଲି ଅନ୍ତର ପରିତ୍ୟାଗ କରି ଭାସମାନ ହେଉଛି ବିରାଟ ଜଳାବ୍ଧିର ଅନ୍ତର ପୁଲକତାରେ ବା ପ୍ରଫୁଲ୍ଲତାରେ; ସସୀମରୁ ଅସୀମକୁ କରି ଉଦ୍ବେଳନ କରୁଛି ଚିନ୍ମାୟୁାନନ୍ଦ ପରଶରେ—ଯେପରି କି ସେ ନିଜକୁ ଭୁଲି ଯାଇ ବିଶ୍ୱଭବର ବିରାଟତ୍ୱକୁ ସନ୍ଦର୍ଶନ କରି ପାରୁଛି, ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଉପଭୋଗ କରୁଛି ସମପ୍ରାଣତାର ରସୋଲ୍ଲାସ—ଜାତୀୟ-ଯଜ୍ଞପୀଠରେ ।

ଏହିଠି ହିଁ କବି-ବାଣୀ ସାର୍ଥକ ହୋଇଛି, ଜାତୀୟତାର ଅପୂର୍ବ ସ୍ପନ୍ଦନ, ଶିହରଣ ବା ପୁଲକ ଏହିଠି ହିଁ ଜ୍ୱଳନ୍ତ ହୋଇଛି । ନିଜେ ଗୋପବନ୍ଧୁ ଯେପରି କୋଟି କୋଟି ମାନବାତ୍ମାର କଲ୍ୟାଣ ପଥରେ ଆସନ୍ନ ମୃତ୍ୟୁ ଆଲୋଡ଼ିତ ରୋଗଶଯ୍ୟାଶାୟୀ ପୁନି-ଦୁଃଖ ପ୍ରତି ସଜାଗ ନ ରହି ଆଗେଇ ଚାଲିଥିଲେ ବାରି ବିନ୍ଦୁ ବର୍ଷଣ ଗତିରେ, ସେପରି ଅନ୍ୟକୁ ମଧ୍ୟ ସେହି ଆଦର୍ଶ ପ୍ରତି ସଜାଗ ହେବା ନିମନ୍ତେ ବାଣୀସାଧନାରତ କର୍ମସୂଚୀ ମାଧ୍ୟମରେ ଉଦ୍‌ବୋଧନ ଦେଇଅଛନ୍ତି । କଳାର ପ୍ରାଚୁର୍ଯ୍ୟ ବରିବର ଏହିଠି ହିଁ ଅନୁଭବ କରିବାକୁ ପଡ଼ିବ ହିଁ ପଡ଼ିବ । କାରଣ ଯେଉଁ କଳା ବା

ସାହିତ୍ୟ କବି ହୃଦୟର ଅନୁଭୂତିଚୟକୁ ଆଶ୍ରୟ କରି ଦେଶ ତଥା ଜାତିର ଯଥାର୍ଥ ନେତୃତ୍ୱ ଗ୍ରହଣ ନ କରେ, ପ୍ରାଣରେ ପୁଲକତା ନ ଜନ୍ମାଏ କିମ୍ବା ନିଜର ଉପାଦେୟତା ବଶତଃ ବିଶ୍ୱର କାଳିମାମୟ ଚିତ୍ରକୁ ସୁନ୍ଦର ଓ ସରସ କରି ମାନ ଓ ଗୌରବ ବର୍ଦ୍ଧନରେ ସହାୟକ ନ ହୁଏ — ସେହି କଳା କଳା ନୁହେଁ, କିମ୍ବା ସେହି ସାହିତ୍ୟ—ସାହିତ୍ୟ ପଦବାଚ୍ୟ ନୁହେ । ଏହା ଧ୍ରୁବ ସତ୍ୟ ।

ଏତିକରେ ସେ ସ୍ଥିର ନ ରହି ସାହିତ୍ୟ ଜରିଆରେ ଶୁଣାଇଛନ୍ତି ସାନ୍ତ୍ୱନା ବାଣୀ । ଦୁଃଖଶୋକବିଦଗ୍ଧ ପ୍ରାଣ କାଳେ ଦୁଃସ୍ଥ ଓ ଦୈନ୍ୟରେ ମ୍ରିୟମାଣ ଭଗ୍ନ ପ୍ରକ୍ଷାଳେକର ଅନ୍ତରାଳରେ ନିଜର ସୃଜନୀ ଶକ୍ତିକୁ ଅକାମୀ କରି ଦେଇ ପାରେ କିମ୍ବା ପ୍ରଲୁବ୍ଧ ନୟନରେ ଯେଉଁ ମହତ୍ ଆଶା କରିଥିଲି ତାହାର ବିପରୀତାର୍ଥରେ ପ୍ରାଣ ଯେପରି ଉତ୍‌କ ବିକଳ ହୋଇ 'ନିରାଶ୍ରୟ ମାଂ ଜଗଦୀଶ ରକ୍ଷ'—ଆର୍ତ୍ତନାଦରେ ଗଗନ ପବନ ମୁଖରିତ କରେ, ସେହି ନୈରାଶ୍ୟ ଅନ୍ଧକାର ଭିତରେ ନିଜେ ଆଶାବାଦୀ ରୂପେ ଭାବୀ ଉଜ୍ଜ୍ୱଳତାର ସନ୍ଧାନ ନେଇ ସାନ୍ତ୍ୱନା ବାଣୀ ଶୁଣାଇ ଅଛନ୍ତି—

"ନ ହୁଅ ନିରାଶ, ନ ହୁଅ ଦୁଃଖିତ
ଉତ୍କଳର ଦେଖି ଦୁଃଖମୟ ଚିତ୍ର,
× × ×
ଆଲୁଅ, ଅନ୍ଧାର ଖେଳେ ଲୁଚକାଳି
ଆସିବ ଆଲୁଅ ପଡ଼ିଲାଣି ପାଳି ।"

ଫନ୍ଦିତ ହୃଦୟରେ ନିସ୍ପନ୍ଦର ପ୍ରଭାବ ଯେପରି ଜୀବନକୁ ଏକବାରକେ ପଙ୍ଗୁ କରିଦେବାରେ କୁଣ୍ଠାବୋଧ ମୁଦ୍ଧା କରେ ନାହିଁ, ସେହିପରି ଏହି ସାହିତ୍ୟିକ-ସାନ୍ତ୍ୱନା ବାଣୀ ଯେ ଏକ **Challenge**

ଏଥିରେ ସନ୍ଦେହର ଅବକାଶ ନାହିଁ । କାରଣ ସୃଜନୀ ଶକ୍ତିର ଲୀଳା ଖେଳାରେ ମାନବର ଆଶା ବୈତରଣୀ ଦେଶ ଦଶର ଗୌରବ ପାଇଁ ଯେଉଁ ଅନନ୍ତ କ୍ଷୀରାବ୍ଧିର କଳ୍ପନା କରି ବସେ, ଜୀବନ ଦର୍ଶନର ପଞ୍ଚ ଭୂମିକାରେ—ତାର ବିନାଶ ହେତୁ ପ୍ରାଣରେ ଆସେ ହତୋତ୍ସାହ, ନୈତିକତାର ଘୋର ଅଧଃପତନ ଏବଂ ବ୍ୟଥିତ ହୃଦୟର କରୁଣ କୋହ । ସେଇଠି ସାହିତ୍ୟ ନିଜର ମଧୁର ପରଶରେ ଆଶ୍ୱାସନା ଶୁଣାଇ ଦୁଃଖିତ ହୃଦୟରେ ଆଣେ ଅପୂର୍ବ ଉଲ୍ଲାସ ଏବଂ ଭବିଷ୍ୟପଥରେ ପାଥେୟ ରୂପେ ଦିଏ ଅପରାଜିତ ଶକ୍ତି ଓ ଉତ୍ସାହ । ସେହିହେତୁ **F. L. Lucas** ଯଥାର୍ଥରେ କହି ଅଛନ୍ତି—**"And towards man's destiny of pain there remain two attitudes which can give at least some consolation—the best that is to be had—the religious and the poetic."** ଅର୍ଥାତ୍ ମାନବର ଦୁଃଖ, ବେଦନା ମଧ୍ୟରେ ସାହିତ୍ୟ ହିଁ ତାକୁ ସାନ୍ତ୍ୱନା ଦେବାରେ ସମର୍ଥ ।

କାହିଁକିନା, ସାନ୍ତ୍ୱନା ମାନବକୁ ଦିଏ ଉତ୍ସାହ ଓ ପ୍ରେରଣା । ନୈରାଶ୍ୟର ନିଷ୍ଠୁର ଚାପରେ ମାନବର କୋମଳ ପ୍ରାଣ ଯେଉଁ-ବେଳେ ଲୌହ ପରି ଶକ୍ତ ଓ କଠିନ ହୋଇଯାଏ ସେହି ସମୟରେ ତାର ସୂକ୍ଷ୍ମତମ ତନ୍ତ୍ରୀଗୁଡ଼ିକ ବିଭ୍ରତାବସ୍ଥା ଭଜଥାଏ, ଯଦ୍ଦ୍ୱାରା କି ଯଥାଯଥ କାର୍ଯ୍ୟାନୁଷ୍ଠାନ ସେ ଗ୍ରହଣ କରି ପାରେ ନାହିଁ ଏବଂ ବିଚାର-ବିଚାର ଜ୍ଞାନଶୂନ୍ୟ ହୁଏ । ଜୀବନ ନିଭୃତର ମୃଦୁ-ଗୁଞ୍ଜନ ଶୁଣିବାକୁ ତାର ପ୍ରବୃତ୍ତି ଦ୍ୱାର ନିରନ୍ତର ଉନ୍ମୁକ୍ତ ଥିଲେ ସୁଦ୍ଧା ଶୁଣିପାରେ ନାହିଁ । ତେଣୁ ସାନ୍ତ୍ୱନାର ମଧୁର ମୂର୍ଚ୍ଛନା ସେଇଠି ନିତାନ୍ତ ଆବଶ୍ୟକ, ଯେହେତୁରୁ ନିରୁତ୍ସାହିତ ପ୍ରାଣ ପୁନର୍ବି ସତେଜ ହୋଇ

ସାଫଲ୍ୟର ମୁମୂର୍ଷୁ ଆକାଙ୍କ୍ଷାକୁ ଦ୍ୱିଗୁଣିତ ଉତ୍ସାହରେ ସଞ୍ଜୀବିତ କରେ—କଠିନ ଓ ଶକ୍ତ ପ୍ରାଣକୁ କୋମଳତର କରିଥାଏ, ଅବଶ୍ୟ ପୂର୍ଣ୍ଣରୂପେ ନୁହେ କିମ୍ବା ଚିରସ୍ଥାୟୀ ଭାବରେ ନୁହେ । ତାହା କେବଳ ସାମୟିକ ତୃପ୍ତି ଓ ଶାନ୍ତି; ଯାହା ବିନା ଭାବୀ ଜୀବନର ବିରାଟ ସୌଖ୍ୟ-ଆଶା ବିଡ଼ମ୍ବନା ମାତ୍ର । ଅତଏବ ଚିରଲାଞ୍ଛିତ ଓ ଦୁଃଖିତ ହୃଦୟରେ ସାନ୍ତ୍ୱନାର ମୃଦୁଧ୍ୱନି ଯେ ବିରାଟର ଅନୁଭୂତ କେହି ହେଲେ ଅସ୍ୱୀକାର କରିବେ ନାହିଁ । ତେଣୁ ମନସ୍ତତ୍ତ୍ୱବିଦ୍ ଗୋପବନ୍ଧୁ ନୈରାଶ୍ୟପୂର୍ଣ୍ଣ ଉତ୍ତପ୍ତ ହୃଦୟରେ ସାନ୍ତ୍ୱନାମୃତ ସିଞ୍ଚନ କରି ଅଛନ୍ତି, ସାମୟିକ ମଧୁର-କୋମଳତାରେ ନିରୁତ୍ସାହିତ ଜୀବନକୁ ଭାବୀ ଆଶାଲୋକର ସମୁଜ୍ଜ୍ୱଳ ପ୍ରତିଭା ଉପଭୋଗ କରିବା ପାଇଁ ପ୍ରେରଣା ଦେଇଛନ୍ତି—ଯେପରି କି ଜୀବନ ସେହି ସାନ୍ତ୍ୱନା ଜନିତ କ୍ଷଣିକ ଶାନ୍ତି ଓ ତୃପ୍ତିରେ ଉଲ୍ଲସିତ ହୋଇ କୈବଲ୍ୟ ପଥର ଯଥାଯଥ ସାମଗ୍ରୀ ସଂଗ୍ରହ କରି ସେହି କ୍ଷଣିକ ତୃପ୍ତି ଓ ଶାନ୍ତିକୁ ଚିର ଭାସ୍ୱର ସମ ଶାନ୍ତିମୟ କରିପାରେ, ଯେହେତୁ କର୍ମମୟ ଜୀବନ ସାନ୍ତ୍ୱନାର କ୍ଷଣିକ ସୁଖରେ ଆନନ୍ଦିତ ହେବା କାରଣ ନୁହେ । ବୈଫଲ୍ୟ ମନୋବୃତ୍ତିକୁ ଉପେକ୍ଷା କରି ଉନ୍ନତ ସୋପାନ ଆରୋହଣ କରିବା ଉଚିତ । ସେହିହେତୁ ଗୋପବନ୍ଧୁ ନିଜର ଓଜସ୍ୱିନୀ ଭାଷାରେ ବିପ୍ଳବର ଗୁରୁଗମ୍ଭୀର ବାଣୀ ଉଠାଇ କର୍ମ ସାଫଲ୍ୟ ନିମିତ୍ତ ଉଦ୍‌ବୋଧନ ଦେଇଅଛନ୍ତି—

"ପିତୃ ପ୍ରତିଷ୍ଠିତ ରାଜ୍ୟେ ଯେହୁ ପରାଧୀନ
ଜଗତେ ତା' ତହୁଁ ବଳି ନାହିଁ କେହି ହୀନ
ପିତୃ ରାଜ୍ୟେ ନାହିଁ ଯାର ପୂର୍ଣ୍ଣ ଅଧିକାର
ସେ ଅଧମ ସୁତ ଶିରେ ସହସ୍ର ଧିକ୍କାର ।"

ପୁଣି

"ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ,
କର୍ମେ ଜୀଏ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

କମ୍ପା

"ଦିନକର ଉଜାଗରେ କିସ ପ୍ରୟୋଜନ
ନିଦ୍ରା ବିମୋହିତ ମୋର ସମସ୍ତ ଜୀବନ ।"

× × ×

"ସମସ୍ତ ଜୀବନ ହେଉ ଏକ ଶିବରାତି
ଅନ୍ଧାରେ ନ ହୁଡ଼ ପଥ ହେ ସରଗଯାତ୍ରୀ ।"

ଏହି ଉପରୋକ୍ତ ପଂକ୍ତିଗୁଡ଼ିକରେ ବୈଫଲ୍ୟ ଓ ଦୌର୍ବଲ୍ୟକୁ ନିର୍ମମଭାବେ କୁଠାରାଘାତ କରି ଚେତନଶୀଳ କରାଇଅଛନ୍ତି । ତାହାପୁଣି କାରୁଣ୍ୟ ଦୂରୀକରଣାର୍ଥେ ତେଜସ୍ୱିନୀ ଓ ମର୍ମସ୍ପର୍ଶୀ ଭାଷାନ୍ତଃକ୍ଷେପ ପ୍ରୟୋଗ କରିଅଛନ୍ତି, ଯେପରି କି ନିଜର ଅନ୍ଧତା ଜ୍ଞାତ ହୋଇ ଜୀବନର ହକ୍ ଦାବୀ ପ୍ରତି ମାନବ ଶତୋତ୍ସାହରେ ଜାଗିଉଠେ ଏବଂ ସାମାଜିକ ଜୀବନକୁ ଯେପରି ବନ୍ଧନମୁକ୍ତ କରି ହୃତ ଗୌରବ ଫେରାଇ ଆଣିପାରେ । ତେଣୁ ସେ ନୈରାଶ୍ୟ ବାଣୀ ଶୁଣାଇ ନାହାନ୍ତି । ବାସ୍ତବତାର ନିର୍ମମ ପ୍ରକୋପରେ ସେ ନିଷ୍ପେଷିତ, ଅପମାନିତ, ଲାଞ୍ଛିତ ଓ ହନ୍ତସନ୍ତ ହୋଇ "ପ୍ରେମ କି କେବଳ ମିଛ ସ୍ୱାର୍ଥର ଛଳନା" ରାଗିଣୀ ତୋଳିଥିଲେ ହେଁ ପାଶ୍ଚାତ୍ୟ ଦେଶର ବିଶିଷ୍ଟ କବି ଓ ଭାବୁକ **T. S. Eliot** ସର୍ବ ସୌଖ୍ୟ ଉପଭୋଗ କରି ବିଶ୍ୱକୁ ଯେପରି ହା' ହତାଶ ରୂପେ ଚିତ୍ରି ଅଛନ୍ତି, ସେପରି ଆମର ଗୋପବନ୍ଧୁ ବିଶ୍ୱକୁ ଚିତ୍ରିତ ବା

ରୂପାୟିତ କରିନାହାନ୍ତି, ମଧୁମୟ ବସନ୍ତର ଉଷାଲୋକରେ ମତୁଆଲ୍ ହୋଇ ଗାଇ ଉଠିଛନ୍ତି—

"ଭାରତ ପ୍ରଭାତରେ ହେଉ ସାର୍ଥ ଋଷିବାଣୀ
ମଧୁମୟ ଭାବେ, ମତ୍ତ ହେଉ ବିଶ୍ୱପ୍ରାଣୀ
ସର୍ବ ସିନ୍ଧୁ ସ୍ରୋତେ କ୍ଷରୁ ମଧୁମୟ ନୀର
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।"

ଏଇଠି ଗୋପବନ୍ଧୁଙ୍କ ହୃଦୟରେ ଅଜ୍ଞାତ-ପ୍ରୀତିର ସନ୍ଧାନ ମିଳେ । ଋଷି ମହର୍ଷିଙ୍କ ଜୀବନ ଯିମିତି ନିରନ୍ତର ଅମୃତୋପଭୋଗରେ ବିଶ୍ୱର କଳୁଷିତ ପରିସରକୁ ମଧୁମୟ କରୁଥିଲା ତାର ଯେପରି ପୁନଃ ଜାଗରଣ ଆସେ ସେଥିନିମନ୍ତେ କବିପ୍ରାଣ ବ୍ୟାକୁଳିତ ହୋଇ ଉଠିଛି । ତାର ସିଦ୍ଧିପାଇଁ 'ଗିରି ଶିଖେ ଲୟ ରଖି' ପାନ୍ଥ ଚାଲିଛି ତା'ର ଗନ୍ତବ୍ୟ ପଥରେ— ଅବିଶ୍ରାନ୍ତ ଗତିରେ । ନାହିଁ ତାର ବିଶ୍ରାମ କି ଆରାମ । ସଫଳତା ହିଁ ତା' ଯାତ୍ରାପଥର ମୁଖ୍ୟ ଉଦ୍ଦେଶ୍ୟ ଓ ଆଶ୍ରୟ ବା ବିଶ୍ରାମସ୍ଥଳୀ । ବିଟପତରୁ ଛାୟା ହିଁ ତା' ପ୍ରାଣର ସୁଖଦା ଓ ଶୁଭଦା ।

ଲକ୍ଷ୍ୟ ରଖିବା କଥା ଯେ ଏହିଠାରେ କେତେକ ଗୋପବନ୍ଧୁଙ୍କ କଳ୍ପନାରେ ବିଳାସିତାର ଆଭାସ ନିହିତ ଅଛି ବୋଲି ସ୍ୱର ଉଠାଇଥାନ୍ତି । କିନ୍ତୁ ତାହା ଭ୍ରମାତ୍ମକ । କାରଣ 'ମଧୁମୟ ଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ' ଏହି ଭାବ କେବଳ ଋଷି-ଶକ୍ତି-ଇଙ୍ଗିତ ଅନ୍ତରୋଲ୍ଲାସର ବାସ୍ତବ ମହାନୁଭବତା । ସେଥିରେ ନାହିଁ କଳ୍ପନା-ସୁନ୍ଦରୀର ପଦପ୍ରାନ୍ତରେ "ଦେହି ପଦ-ପଲ୍ଲବ ମୁଦାରଂ" ମିନତିରେ ନିଲର୍ଜ୍ଜ-ପ୍ରୀତିର ଆଭାସ । ବିଶ୍ୱ ପକ୍ଷେ ଯାହା ଆବଶ୍ୟକ, ଦେଶ ତଥା ସାହିତ୍ୟ ପକ୍ଷେ ଯାହା ପ୍ରଯୁଜ୍ୟ—ସେହି, ସେହି ଭାବବାର୍ମିର ଚ୍ଛାଯାର ମାନ ।

ଯେଉଁ କବି ଆଶା ସାଫଲ୍ୟର ମାଧୁର୍ଯ୍ୟରେ ଜନ-ହୃଦୟକୁ ବିମୁଗ୍ଧ କରି ଊଷର ଭୂମିରେ ଶସ୍ୟ ଶ୍ୟାମଳିତ ସୁଷମାର ଇଙ୍ଗିତ ଦିଏ, ବିଶେଷତଃ ଆଜିକାର ପ୍ରଗତିଶୀଳ ଦୁନିଆରେ ନିରାଶାର ବାତାବରଣ ସୃଷ୍ଟି କରି ହତୋତ୍ସାହ ବାଣୀରେ ପ୍ରାଣକୁ ନିସ୍ତେଜ କରେ ବା ଭାବୀ ବଂଶଧରଗଣଙ୍କୁ ପଛକୁ ଟାଣି ଆଣେ—ତେବେ ସେ ସୃଷ୍ଟିକୁ କି ନୂତନାଲୋକରେ ଉଦ୍ଭାସିତ କରେ ! ନିରୁତ୍ସାହିତ ବା ମର୍ମାହତ ଜୀବନରେ କି ଆଶାର ଦୀପ୍ତି ଶିଖା ଜଳାଏ ! ସେ ତିମିରକୁ ସେ ତିମିର ସିନା !!! ଏଇ କବି କାହୁଁ ହେଲେ ସମାଜ-ସ୍ରଷ୍ଟା ବା ଅଭିନବ-ପଥ-ମାଧୁର୍ଯ୍ୟର ଦ୍ରଷ୍ଟା !!! ଯେଉଁ କବି ଦୁଃଖ-ଦୁର୍ଦ୍ଦିନ-କବର ଉପରେ ଧ୍ୱଂସମୁଖୀ ଆହ୍ୱାନକୁ ପ୍ରତ୍ୟାଖ୍ୟାନ ବା ପ୍ରତିହତ କରି ବିଜୟୀ ବୀର ରୂପେ ଗାଏ, ସେ ଏକା କବି ଓ ଭାବୀ ଯୁଗର ଆଲୋକ ବର୍ତ୍ତିକା । ଉଦାହରଣ ସ୍ୱରୂପ—

"ଭସ୍ମ ଅବଶେଷ ଉପରେ
ମୁଁ ରଚିବି ନନ୍ଦନ
ମର୍ତ୍ତ୍ୟରେ ଅମରାବତୀ
ନର ଦେହେ ଅମୃତ ସ୍ପନ୍ଦନ ।"

କିମ୍ବା

ଇଂରେଜ କବି **A.S.M. Hutchinson**ଙ୍କ ଲିଖିତ **"If Winter Comes"** ଉପନ୍ୟାସରେ ଜାତୀୟ ଦୁର୍ଦ୍ଦଶାର ଚିତ୍ର ସନ୍ନିବେଶିତ କରିବା ସଙ୍ଗେ ସଙ୍ଗେ, ତନ୍ମଧ୍ୟରେ ଆଶାର ଅତ୍ୟୁଜ୍ଜ୍ୱଳ ଶିଖା ଜଳାଇ ଜନତାକୁ ପ୍ରେରଣା ଦେଇ କହିଅଛନ୍ତି—

**"If winter comes can spring be far behind."**

ଏହିଠି ହିଁ କବିପଦ ସାର୍ଥକ ଏବଂ ଆଲୋକପ୍ରଦାୟକ ହିସାବରେ କବି ଏଇଠି ବରେଣ୍ୟ । ଅତଏବ ଗୋପବନ୍ଧୁଙ୍କର

ଆନନ୍ଦମୟ ପ୍ରଭାତର ବିଭବତା ହିଁ ସେହି ଆଲୋକଦାୟକ କବି-ବାକ୍ୟ ପରି ଶୁଭସୂଚକ । ଯେହେତୁ କବି ପ୍ରଗତିଶୀଳ ମନୋବୃତ୍ତିର ଉଦ୍‌ଘୋକ୍ତା ବା ସ୍ରଷ୍ଟା । ସାମାଜିକ ଜୀବନକୁ ନିୟନ୍ତ୍ରିତ କରିବାରେ ସାହିତ୍ୟର ଯେତେବେଳେ ଦାୟିତ୍ୱ ରହିଛି ସେଇଠି ପ୍ରଗତିଶୀଳ ନହେବା ସାହିତ୍ୟର ଗୌରବ ନୁହେଁ କିମ୍ବା ବିଭବ ନୁହେଁ । ଭାବୀ ଯୁଗକୁ ଯେଉଁ ସାହିତ୍ୟ ଦାନ କରିପାରେ ନାହିଁ ଆଲୋକ ବିଚ୍ଛୁରିତ ବିମଳତା, ଆତ୍ମହତ୍ୟାକାଙ୍କ୍ଷୀକୁ ନୂତନୋଦ୍ଦୀପନାରେ ଉଲ୍ଲସିତ କରି ବଞ୍ଚି ରହିବାର ଖିବ୍ରତା—ତେବେ ସେହି ସାହିତ୍ୟ ଥିଲେ କେତେ ନ ଥିଲେ ଅବା କେତେ ! ଏହି ଦୃଷ୍ଟିରେ ଗୋପବନ୍ଧୁଙ୍କୁ ଯଦିଓ କଳ୍ପନା-ବିଳାସୀ ବୋଲି କହୁଁ ତେବେ ଆମର ଧୃଷ୍ଟତା ନ ହୋଇ କଣ ଅବା ହେବ ! ଏହି ଯୁଗର ଅନ୍ୟତମ ପ୍ରସିଦ୍ଧ କବି ଡ଼ଆଲ୍‌ଟ ହୁଇଟମେନ୍ (Walt Whitman) ନିଜର କବିତାବଳୀ ପ୍ରତି ଲକ୍ଷ୍ୟ କରି ଯେପରି ମତ ପ୍ରକାଶ କରିଅଛନ୍ତି ତାହା ଉଲ୍ଲେଖ-ଯୋଗ୍ୟ, ଯଥା—

> "Comrade, this is no book
> Who touches this
> Touches a man."

ସେହି ଉକ୍ତିର ତାତ୍ପର୍ଯ୍ୟରେ ଆମେ ଯେତେବେଳେ ଗୋପବନ୍ଧୁ ସାହିତ୍ୟର ମୂଲ୍ୟ ନିର୍ଦ୍ଧାରିତ କରୁଁ ତେବେ କଣ ଦେଶହିତୈଷୀ ଗୋପବନ୍ଧୁ କହିଥାନ୍ତେ—

> "I am tired with my own life and
> the lives of these after me,
> I am dying in my own death and the
> death of these after me."

ଅସମ୍ଭବ ! ବାତୁଳତାର ପ୍ରଳାପ ମାତ୍ର ! କାରଣ କୋଟି କୋଟି ଧନ-ଦରିଦ୍ର-କାଙ୍ଗାଳ ଜନତାର ସେବକରୂପେ ନେତୃତ୍ୱ ନେଇ ଯଦିଓ ତାଙ୍କର କଣ୍ଠରେ ଉଠିଥାନ୍ତା ନୈରାଶ୍ୟ ବେଦନା-ଭରା ରାଗିଣୀ, ତେବେ ତାହା ଆତ୍ମଘାତି ହୋଇ ନ ଥାନ୍ତା କି ? ସେପରି ବ୍ୟକ୍ତିର ସ୍ଥାନ ମାନବଜାତିର ହୃଦ-ସିଂହାସନରେ ନା' ବିସ୍ମୃତିର ଅତଳ ଗହ୍ୱରରେ ! ! ! ? **A. S. M. Hutchinson**ଙ୍କ ଭଳି ଜାତିପ୍ରୂ ଦୁର୍ଦ୍ଦଶାର ନିଖୁଣ ଚିତ୍ର ଯିମିତି ସେ ସାହିତ୍ୟରେ ରୂପାୟିତ କରିଅଛନ୍ତି, ତେମନ୍ତ ମଧ୍ୟ ଭବିଷ୍ୟୁଗର ସାଫଲ୍ୟାଲୋକ ଜାଳି ଦେଶକୁ ଗୌରବାବହ ପଞ୍ଚଭୂମିରେ ଦଣ୍ଡାୟମାନ କରିବା ସକାଶେ କହିଛନ୍ତି—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ଏହି ମନ୍ତ୍ର ତାଙ୍କର ନିତ୍ୟନୈମିତ୍ତିକ ଜପମାଳି ହୋଇଛି--- କେବଳ ସେହି ଆଶା ସାଫଲ୍ୟ ପାଇଁ । ଜାତିପ୍ରୂତାର ମାନ ବଢ଼ାଇବା ପାଇଁ ଯେଉଁ ତ୍ୟାଗ ଦରକାର ତାଠୁଁ ବଳି ଅଧିକ ତ୍ୟାଗ ସେ କରିବାକୁ କୁଣ୍ଠାବୋଧ କରି ନାହାନ୍ତି । କାରଣ ତ୍ୟାଗରେ ଯେଉଁ କର୍ମପ୍ରବଣତା ଜାତ ହୁଏ ତାହା ଅଲୌକିକ । ଯେଉଁ ସଭ୍ୟତା ଓ ସଂସ୍କୃତି ଆମର କେଉଁ ଆବହମାନ କାଳରୁ ଏଇ ଦେଶରେ ବହି ଆସି ନିରବଚ୍ଛିନ୍ନ ଭାବରେ ତିଷ୍ଠି ପାରିଛି ତାହା ଯେ କେବଳ ତ୍ୟାଗର ଅଲୌକିକ ପ୍ରେରଣା ସନ୍ଦେହ ନାହିଁ । କାରଣ ରୋମ୍ ସଭ୍ୟତା ଯେତେ ବରିଷ୍ଠ ଓ ଉନ୍ନତ ହୋଇ ଥାଉ ନା' କାହିଁକି ଉନ୍ନତ ଆର୍ଯ୍ୟ ସଭ୍ୟତା ଆଗରେ ଏପରି ଭାବେ ନିଶ୍ଚିହ୍ନ ହୋଇ ଯାଇଛି ଯେ ଆଜ ସୁଦ୍ଧା ତା'ର ପୂର୍ବପୁରି ନା ଗନ୍ଧ ନାହିଁ କହିଲେ ଚଳେ । ଅଥଚ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତି ଚିର ଭାସ୍ୱର ସମ

ଦୀପ୍ତିମୟ ହୋଇ ଚିରଦିନ ସେଇକାଳୁ ରହିଛି । ଶତ ଶତ ବିଜାତୀୟ ଝଡ଼ଝଞ୍ଜା ଭିତରେ ଗତି କରି ତାର ମୌଳିକ ପରମ୍ପରାରୁ ବିଚ୍ୟୁତ ହୋଇନାହିଁ । କାହିଁକି ? ସେହି ପୂତମୟ ତ୍ୟାଗର ଅଲୌକିକ ଶକ୍ତିହେତୁ । ତ୍ୟାଗ ଯେହେତୁ ହେଉଛି ଆର୍ଯ୍ୟର କର୍ମ ଓ ଧର୍ମ । ତ୍ୟାଗ ଭିତରେ ଆର୍ଯ୍ୟପ୍ରାଣ ଅନୁଭବ କରୁଛି ଭୋଗର ଅଦ୍ଵିତୀୟ ବିଳାସ । କାରଣ ଭୋଗ ବୋଲି ଆଜିକା ଦୁନିଆ ଯାହାକୁ ଭାବୁଛି ତାହା ଭୋଗ ନୁହେ, ଭୋଗ-ରୂପୀ ନରକକୁଣ୍ଡ ମାତ୍ର—ଯେଉଁଠି କି ବସ୍ତୁତାନ୍ତ୍ରିକବାଦ ତଳେ ମନୁଷ୍ୟର ସ୍ୱରୂପ ଏକବାରକେ ବିଲୁପ୍ତ ହୋଇ ରକ୍ତଚଣ୍ଡୀର ଲେଲିହାନ ଜିହ୍ଵାର ଆଶ୍ରୟ ନିଏ, ଯାହାର ଅତ୍ୟଧିକ ପରିଣତି ଆଜିକା ଦୁନିଆର ଦୁର୍ଗତି ଓ ବିପତ୍ତି ।

ଏଥିଯୋଗୁଁ ଆର୍ଯ୍ୟ ମନୀଷୀଗଣ ତ୍ୟାଗ ବଳରେ ଦୁନିଆର ସୁଖ ସମୃଦ୍ଧି କାମନା କରୁଥିଲେ ଏବଂ ନିଜ ନିଜର ଅନ୍ତର୍ନିହିତ ଅନନ୍ତ ଶକ୍ତିକୁ ଚହଳି ବିଶ୍ୱକଲ୍ୟାଣ ପଥରେ ଅମୃତବିନ୍ଦୁ ସିଞ୍ଚୁଥିଲେ, ଅଲୌକିକ ଆଲୋକ ଦୀପ୍ତିରେ ଉଦ୍ଭାସିତ କରି ଦୁନିଆ ପୃଷ୍ଠରୁ ମୋହାନ୍ଧକାରକୁ ନାଶି ଶାନ୍ତିବାଚନ ପଢ଼ୁଥିଲେ, "ବସୁଧୈବ କୁଟୁମ୍ବକଂ" ପ୍ରେରଣାରେ ସାରା ବିଶ୍ୱର ମଙ୍ଗଳ କାମନା କରୁଥିଲେ । କାରଣ ସେମାନେ ହୃଦୟଙ୍ଗମ କରିଥିଲେ ଯେ ଦୁନିଆର ସୁଖସମ୍ଭୋଗ ହିଁ ବ୍ୟକ୍ତିଗତ ଜୀବନର ତୃପ୍ତି । ଦୁର୍ଦ୍ଦଶାଗ୍ରସ୍ତ ସମାଜ ବା ଦୁନିଆ ଆଗରେ ନିଜେ କେବଳ ଭୋଗୀ ହୋଇ ରହିବା ଯେମିତି ମାନବିକତା ଦୃଷ୍ଟିରୁ ଦୋଷଦୁଷ୍ଟ ସେମିତି ବାସ୍ତବତା ଦୃଷ୍ଟିରୁ ମଧ୍ୟ ଅତି ଉତ୍କଟ । ଯେଉଁ ବିଳାସ ବୈଭବ ଗୋଷ୍ଠୀ ମୁଖରେ ନ ଫୁଟାଇଛି ମୃଦୁହାସ୍ୟ, ସେହି ବିଳାସ—ବିଳାସ ନୁହେ କିମ୍ବା ବୈଭବ ନୁହେ, ବିଳାସରୂପୀ ଉତ୍କଟ ବିଷର

ଯନ୍ତ୍ରଣା । ଅତଏବ ଆର୍ଯ୍ୟ ସଂସ୍କୃତି ସେହି ଗତାନୁଗତିକ ପନ୍ଥାରେ ଅଟଳ, ଅଚଳ ରହି ଗତି କରି ଆସୁଛି ତ୍ୟାଗରେ ଦୁନିଆର ସୁଖ ସମୃଦ୍ଧି ଉପଭୋଗ କରିବାକୁ । ତେଣୁ ଗୋପବନ୍ଧୁ ଆର୍ଯ୍ୟର ସେହି ମହତ୍ ଗୁଣାବଳୀକୁ ଚରମ ଆଦର୍ଶ ରୂପେ ଆଖି ଆଗରେ ରଖି ନିଜର ଜୀବନକୁ ନିୟନ୍ତ୍ରିତ କରୁଥିଲେ ଏବଂ ଅନ୍ୟମାନଙ୍କୁ ସେହି ପଥରେ ଆଗେଇ ପୂର୍ବପୁରୁଷଙ୍କର ଅମର କୀର୍ତ୍ତିରେ ବିଭୂଷିତ ହେବା ନିମନ୍ତେ ପ୍ରେରଣା ଦେଇଥିଲେ ମଧ୍ୟ । ଜାତୀୟ ତଥା ମାନବିକତାର ମହତ୍ତ୍ୱ ଯିମିତି ଦୁନିଆ ଆଗରେ ଏକ ଗୌରବାବହ ପୃଷ୍ଠଭୂମିକା ସୃଷ୍ଟି କରେ ସେଥିର କର୍ଣ୍ଣଧାର ରୂପେ ସେ ସତତ ଜାଗ୍ରତ ରହୁଥିଲେ । ତେଣୁ ଜାତୀୟତାର ମାନ ବଢ଼ାଇବା ନିମନ୍ତେ ସମସ୍ତ ତ୍ୟାଗ ସ୍ୱୀକାର କରୁଥିଲେ । ଏପରିକି ନିଜର ଆତ୍ମାକୁ ମଧ୍ୟ ଉତ୍ସର୍ଗ କରିଦେବାରେ ପରାଙ୍ମୁଖ ହୋଇ ନାହାନ୍ତି । ସେହିପରି ତାଙ୍କର ସାହିତ୍ୟ ମଧ୍ୟ ସେହି ଆର୍ଯ୍ୟ-ସଂସ୍କୃତିର ପ୍ରତୀକ ରୂପେ ଆତ୍ମବଳି ଦେବାରେ ପରାଙ୍ମୁଖ ନୁହେଁ । ଉଦାହରଣ ସ୍ୱରୂପ—ଶିଶୁ ଧର୍ମପଦର ମୁଖରେ କୁହାଇଛନ୍ତି,—

"ଜନମ ହୋଇଲେ ଆଗେ ଅବା ପଛେ
ଅବଶ୍ୟ ହେବ ମରଣ ।
କାପୁରୁଷ ପରି ମରିବା ଜଗତେ
ନୁହେ ନର ପଉରୁଷ
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।"

କମ୍ମା

"ବାରଣ ବଢ଼ାଇ                    ରକତ ରଞ୍ଜିତ
ଯଶ ସନମାନ ଧନ
ଯାଇ ରାଜଦ୍ୱାରେ                    କହ କି ପ୍ରକାରେ
ବଢ଼ିବ ମୋ ବଡ଼ପଣ ।

×                    ×                    ×

ଏକର ବିନାଶେ                    ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି
ଏକର ଯା' କ୍ଷୟ                    ଅନେକ ଉଦୟ
ଅନେକ ଏକର ସିଦ୍ଧି ।"

ଆହୁରି ମଧ୍ୟ ଚେତାବନୀ ଶୁଣାଇଛନ୍ତି,—

"ଏ' ସଂସାର ବାପ                    ମହା ମଖଶାଳ
ନରନାରୀ ଯଜମାନ
ସେହି କୃତୀ ଯେହି                    ପରହିତେ କରେ
ଜୀବନ ଆହୁତି ଦାନ ।"

ଏହି ଉପରୋକ୍ତ ଉକ୍ତିଗୁଡ଼ିକ ଜାତୀୟ ତ୍ୟାଗର ଯେମନ୍ତ ଜ୍ୱଳନ୍ତ ନିଦର୍ଶନ ଦିଏ ତେମନ୍ତ ମଧ୍ୟ ଅନ୍ୟ ପ୍ରାଣକୁ ସତତ ଉଦ୍‌ବୁଦ୍ଧ କରେ—ଆତ୍ମତ୍ୟାଗ ଜନିତ ମେଦ-ମାଂସ-ଶୋଣିତରେ ଜାତୀୟତା ଭିତ୍ତିକୁ ସୁଦୃଢ଼ କରିବାକୁ ।

ଏତାଦୃଶ ଭାବନାରାଶି ତାଙ୍କର ସମସ୍ତ ରଚନାବଳୀରେ ମୂର୍ତ୍ତିମନ୍ତ ହୋଇଛି, କହିଲେ ଅତ୍ୟୁକ୍ତି ହେବ ନାହିଁ । ଜାତୀୟ ଗୌରବୋନ୍ମେଷରେ ଭାବ-ମଞ୍ଜୁଳତା ଏପରି ସୂକ୍ଷ୍ମଭାବେ ସୁଶୋଭିତ ଯେ ସାହିତ୍ୟ ତଥା ସାମାଜିକ ଜୀବନ କ୍ଷେତ୍ରରେ ଏକ ଅପୂର୍ବ ଅଭିନବାଲୋକ-ପଥ ଉନ୍ମୁକ୍ତ କରିଛି । ଶିବଙ୍କ

ଅର୍ଚ୍ଚନାରେ ବରଂ ବାଲ୍ୟଦଳର ଅଭାବ ପରିଲକ୍ଷିତ ହୋଇପାରେ, କିନ୍ତୁ ସାହିତ୍ୟରେ ଜାତୀୟତାର ଅଭିବୃଦ୍ଧି କରିବା ଏବଂ ଜାତୀୟତାକୁ ଆତ୍ମତ୍ୟାଗ ଉପାଦାନରେ ସୁଦୃଢ଼ୀଭୂତ କରିବା, ଏହି ମହନୀୟ ଆଦର୍ଶ କେଉଁଠି ହେଲେ ଲେଶମାତ୍ର ହ୍ରାସତା ଭଜି ନାହିଁ । ସାଧାରଣତଃ କହିପାରୁଁ ଗଙ୍ଗାଯମୁନାର ଅତୁଳନୀୟ ମିଳନାତ୍ମକ ମାଧୂର୍ଯ୍ୟ ଯେପରି ସୃଷ୍ଟି ହୋଇଛି କିମ୍ବା ଜୀବାତ୍ମା ଓ ପରମାତ୍ମାର ସମ୍ମିଶ୍ରିତ ପ୍ରେରଣା ଯେପରି ଭୌତିକ ଜଡ଼ ଶରୀରକୁ ଚେତନଶୀଳ କରାଇ ଦିବ୍ୟାନୁଭୂତିର ଇଙ୍ଗିତ ଦେଉଛି, ସେପରି ସମୁଜ୍ଜ୍ୱଳ ଆଦର୍ଶମୟ ଜାତୀୟତା ଓ ଆତ୍ମତ୍ୟାଗ ଉଭୟର ସମ୍ମିଳିତ-ସମ୍ବିଧାନରେ ତାଙ୍କର ପୁଣ୍ୟ ଜୀବନ ତଥା ସାହିତ୍ୟ ପରିପୁଷ୍ଟ ହୋଇଛି । ଏହାହିଁ ଅନ୍ତର ଭାବରାଜିର ସୁସ୍ପଷ୍ଟ ଅଭିବ୍ୟକ୍ତି ଏବଂ ଆତ୍ମାର ପରିଚୟ । କବିତା ଯେହେତୁ କବି ଜୀବନ ତଥା ଭାବର ସ୍ପନ୍ଦନ । ତେଣୁ କୁହାଯାଇଛି "Poetry is the inspiration of the thought".

ଜାତୀୟ କବି ଗୋପବନ୍ଧୁ ଜାତୀୟତା-ଧନ-ମାହାତ୍ମ୍ୟ ପ୍ରାଣେ ପ୍ରାଣେ ଖୁବ୍ ନିବିଡ଼ ଭାବରେ ଉପଲବ୍ଧି କରିପାରି ଥିଲେ । ଯେହେତୁ କି ସରଳ, ସରସ ଓ ପ୍ରାଣସ୍ପର୍ଶୀ ଭାଷାରେ ଜାତିକୁ ଉଦ୍‌ବୋଧନ ଦେଇ ସେ ଅନୁପ୍ରାଣିତ କରି ଅଛନ୍ତି । ଏହା ହିଁ ଓଡ଼ିଆ ବାଣୀ କ୍ଷେତ୍ରର ଚିର ବୈଭବ ଏବଂ ଭାବୀ ସାହିତ୍ୟ-ସାଧନାର ଗୌରବ ମଧ୍ୟ ।

**ଭାଷା ଓ ଭାବ**—ଗୋପବନ୍ଧୁ ସାହିତ୍ୟ ଅନୁଶୀଳନ କଲେ ଜଣାଯାଏ ଯେ ସରଳ ଓ ଉନ୍ମାଦକାରୀ ରୂପେ ଭାଷା ଓ ଭାବ ଯେପରି ଚମତ୍କାର ଭାବରେ ରୂପବନ୍ତ ହୋଇ ପାରିଛି ।

ଏହି ଦୁଇଟିର ଅପୂର୍ବ ସମାବେଶରେ ସାହିତ୍ୟ ଯିମିତି ଅତ୍ୟନ୍ତ ମାଧୁର୍ଯ୍ୟମୟୀ ହୋଇ ଆତ୍ମପ୍ରକାଶ କରିଛି ତେମନ୍ତ ମଧ୍ୟ ଅତ୍ୟନ୍ତ ସରଳ, ଲଳିତ ଓ ହୃଦ୍ୟ ହୋଇ ପ୍ରାଣକୁ ପୁଲକିତ କରୁଛି ।

ଏହା କେବଳ ସମ୍ଭବ ମହାନ୍ ପ୍ରତିଭାଶାଳୀ ଲେଖକ ପକ୍ଷେ । କାରଣ ଭାଷା ଓ ଭାବର ସମନ୍ୱୟ-ସୁଷମା ସୃଷ୍ଟି କମ୍ କୃତିତ୍ୱର ପରିଚୟ ନୁହେ । ଅନ୍ତରର ଭାବକୁ ଯଥାଯଥ ଭାଷାରେ ଯଦିଓ ପ୍ରାଣବନ୍ତ କରି ନହେଲା, ତେବେ ଉକ୍ତ ସାହିତ୍ୟ ଭାବ ପ୍ରଭାବକୁ ସେତେ ପରିମାଣେ ସଂଜୀବିତ କରିପାରେ ନାହିଁ କିମ୍ବା ଜୀବନକୁ ପ୍ରଭାବିତ କରିପାରେ ନାହିଁ । ଏହା ସ୍ୱତଃସିଦ୍ଧ । ତେଣୁ ପ୍ରତିଭାର ବିମଳାଲୋକରେ ଅନ୍ତରର ଭାଷା ମଧୁମକ୍ଷିକାପରି ଭାବକୁ ସଦାସର୍ବଦା ଅନୁସରି ଥାଏ କିମ୍ବା "ବାଲକାନ୍ତୁ ବାସ ପରି" ନିବିଡ଼ ସମ୍ବନ୍ଧରେ ଆବଦ୍ଧ ହୋଇଥାଏ । ତେଣୁ ଭାଷା ଓ ଭାବର ସମନ୍ୱୟ ରକ୍ଷା କରିବା କବିର ଧର୍ମ । କାରଣ ଭାବ ହେଉଛି କବିତାର ପ୍ରାଣ । ପ୍ରାଣହୀନ ପିଣ୍ଡ ଯେପରି ପରିତ୍ୟକ୍ତ ଓ ମୃତବତ୍, କବିତା ମଧ୍ୟ ସେହିପରି ଭାବ ବିନା ଅଗ୍ରାହ୍ୟ ଓ ଅନାଦରଣୀୟ । ତା' ବୋଲି ମାତ୍ର ଭାବର ବଶବର୍ତ୍ତୀ ହେବା କବିତାର ଧର୍ମ ନୁହେ । ଅଲୌକିକ ଓ ମଧୁର ଭାବ ସୃଷ୍ଟିରେ କବିତାକୁ ଯେତେଦୂର ରସଯୁକ୍ତ କରି ପାରିବ ସେତେ ପରିମାଣରେ ହୃଦବୋଧ ହୋଇ ଶ୍ରେଷ୍ଠ କବିତ୍ୱ ପ୍ରକାଶ କରିବ । ତତ୍‌ସହିତ ଭାଷାର ପଟୁତା ମଧ୍ୟ ନିହାତି ଦରକାର । କାରଣ ଭାଷାର ଉପଯୋଗିତା ଯଦିଓ ନଥାଏ ତେବେ କବିତାର ଭାବ ଯେତେ ଉଚ୍ଚସ୍ତରର ହୋଇଥାଉ ନା କାହିଁକି ତାହା ଉଲଗ୍ନ ଓ କଦାକାର ରୂପ ପାଇଥାଏ । କବିତାର ହୃଦ-ମୋହିନୀ ମୂର୍ଚ୍ଛନା ସେଇଠି

ନିଷ୍ଫଳ ହୋଇଥାଏ, ସଭ୍ୟତା ଓ ସଂସ୍କୃତିଠାରୁ ସେ କବିତା ହୋଇଥାଏ ସୁଦୂର ପରିହିତ । ଯେହେତୁ ଭାଷା ଭାବର ପୋଷାକ ସଦୃଶ । ଯେମନ୍ତ ଉପଯୁକ୍ତ ପୋଷାକ ବିନା ମାନବସମାଜ ଯେତେ ଉନ୍ନତ ହୋଇଥିଲେ ମଧ୍ୟ ନିଜର ଗୌରବ-ଶ୍ରୀକୁ ପ୍ରକଟିତ କରିପାରେ ନାହିଁ, କବିତା ମଧ୍ୟ ତେମନ୍ତ ଉପଯୋଗୀ ଭାଷା-ଭୂଷଣ-ବିଭବ ବିନା ଚିତ୍ତ-ଚିତ୍ତ-ବିନୋଦନ ହୋଇପାରେ ନାହିଁ ।

ସେହି ଦୃଷ୍ଟିରୁ ବିଚାର କଲେ ଭାଷା ଓ ଭାବର ଯେଉଁ ଐକ୍ୟତାନିକ ମଧୁର ମିଳନ-ସୁଷମା ଗୋପବନ୍ଧୁ ସାହିତ୍ୟରେ ପରିଦୃଷ୍ଟ ହୁଏ ତାହା ସାହିତ୍ୟ-କଳାର ଅତୀବ ବିକାଶ ଓ ପ୍ରକାଶ । କବିତାରେ ତାଙ୍କ ଭାବର ତୀବ୍ରତା, ତୀକ୍ଷ୍ଣତା, ମାଧୁର୍ଯ୍ୟ ବା ମାଦକତା ମନପ୍ରାଣକୁ ଯେପରି ବିହ୍ୱଳ କରିଦିଏ ଭାଷାର ପଟୁତା ମଧ୍ୟ ଅନ୍ତଃସଲିଳା ଫଲ୍‌ଗୁ ଧାରାପରି ପ୍ରବାହିତ ହୋଇ ମନପ୍ରାଣକୁ ଆମୋଦ ଦିଏ । କାରଣ ଭାବୋଚ୍ଛ୍ୱାସ ଭାଷାର ଅନୁରୂପ ପରିଗ୍ରହ ଘେନିଛି । ଯେହେତୁ କି ଭାଷା ଅତ୍ୟନ୍ତ ତେଜୋମୟୀ ହୋଇ ପ୍ରାଣରେ ସୃଷ୍ଟି କରେ ଉନ୍ମାଦନା ବା ଉତ୍ତେଜନା, ଜଡ଼ ପ୍ରାଣରେ ଆଣେ ଉନ୍ନତ କର୍ମୋଚ୍ଛ୍ୱାସର ପ୍ରେରଣା । ପୁଣି ସ୍ଥଳବିଶେଷରେ ସ୍ନେହ-ପ୍ରୀତି-ମଧୁର-ବ୍ୟଞ୍ଜକ ଭାଷା ପ୍ରାଣକୁ ଯେପରି ଆମୋଦିତ କରେ ସେପରି କାରୁଣ୍ୟ ଏବଂ କରୁଣାତ୍ମକ ଭାବଧାରା ଖେଳାଇ ଦେଇପାରେ । ପ୍ରାଣକୁ ପ୍ରାଣ ସହିତ ମିଳାଇ ସହାନୁଭୂତିଶୀଳ କରାଇଦିଏ । ଅଲୌକିକ ଶକ୍ତି-ଉତ୍ସ-ରସରେ ଭସାଇ ଦେଇପାରେ ମଧ୍ୟ । ଉଦାହରଣ ସ୍ୱରୂପ ସୈନ୍ୟବାହିନୀର "ମାର୍ଚ୍ଚିଂ ସଙ୍ଗ୍" (**marching song**) ବେଣ୍ଡ୍ ବାଜାର ସମତାଳରେ ସ୍ଫୁରିତ ହୋଇ ଯେପରି ବୀରତ୍ୱ ସ୍ପନ୍ଦନ ଜନ୍ମାଇ-ପାରେ, ଭକ୍ତି-ସାହିତ୍ୟ ରସ-ମାଧୁରୀ ହୃଦୟକୁ ଯେପରି ରସଯୁକ୍ତ

କରି ତୋଳେ, ତେମନ୍ତ ମଧ୍ୟ ଜଗନ୍ନାଥଙ୍କ ନବାକ୍ଷରୀ ଭାଗବତ ସ୍ଫୁରିତ ଦର୍ଶନ ଅଲୌକିକ ରସାନନ୍ଦ ଉପଭୋଗ୍ୟର ଚେତନା ଦିଏ କିମ୍ବା କରୁଣ ରସାତ୍ମକ କବିତା ମଧ୍ୟ ତଦୁପରି ଝରାଇ ଦେଇପାରେ ଶତରୁଦ୍ଧ ବେଦନାର ଅଜସ୍ର ଅଶ୍ରୁଧାରା ନିଷ୍ଠୁର ଓ କର୍କଶ ହୃଦୟରୁ । ଏହି ଦକ୍ଷତା ହିଁ କବିର ଯେମନ୍ତ ଗୌରବ ଓ ମହତ୍ତ୍ୱ ।

ସେହିହେତୁ ଭାଷା-ରସ ଯେପରି ସରସ୍ୱତୀ-ପଦ-ପ୍ରକ୍ଷାଳିତ-ସୁଧା ରୂପେ ଉଚ୍ଛୁଳିତ ଭାବକୁ ଆଲୋଡ଼ିତ କରିପାରେ ତେମନ୍ତ ସାହିତ୍ୟର ସ୍ରଷ୍ଟା ଥିଲେ ସାହିତ୍ୟିକ ଗୋପବନ୍ଧୁ । ତାଙ୍କର ପ୍ରତ୍ୟେକ କବିତା ଏହି ମଧୁର ମିଳନର ସୁସ୍ପଷ୍ଟ ପ୍ରମାଣ ଦେବ । 'ବନ୍ଦୀର ଆତ୍ମକଥା', 'ପିତୃ-ତର୍ପଣ', 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ', 'ପ୍ରାର୍ଥନା' ପ୍ରଭୃତି କବିତାଗୁଡ଼ିକରେ ସେ ଯେପରି ବ୍ୟଥିତ ହୃଦୟର ରାଗିଣୀ ତୋଳି ଭାଷା ଓ ଭାବର ଏକ ମିଳନାତ୍ମକ ଶବ୍ଦ ପ୍ରଦାନ କରିଅଛନ୍ତି ଓଡ଼ିଆ ସାହିତ୍ୟରେ ତାର ପଟାନ୍ତର ନାହିଁ । ଏସବୁ କବିତା ସେ ପଦକୁ ପଦ ମିଳାଇ କିମ୍ବା ଅକ୍ଷର ଗଣି ଗଣି ଯତି ପ୍ରସ୍ତୁତ କରି ଲେଖି ନାହାନ୍ତି । କିଅବା ଆଜକାଲି ପରି ପଡ଼ୋଶୀ ସାହିତ୍ୟର ଚର୍ବିତ-ଚର୍ବଣ ସାହିତ୍ୟ ନିଜ ଦେଶରେ ସୃଷ୍ଟି କରି ନାହାନ୍ତି । କରିଛନ୍ତି—ନିଭୃତ ଅନ୍ତରର ମୂର୍ଚ୍ଛନାରେ ଭାଷା-ମାଧୁର୍ଯ୍ୟରେ ଭାବଚୟକୁ ପ୍ରକାଶ କରିବାର ଏକ ପ୍ରତିମୟ ପ୍ରୟାସ । ପୁଣି ସ୍ୱଳ୍ପ ଅଭିଜ୍ଞତାରେ ବିକ୍ଷିପ୍ତ ଭାବ-ସମଷ୍ଟିର ଖେଚଡ଼ିଥାଳି କରି କବିତା ଲେଖି ନାହାନ୍ତି । ଲେଖିଛନ୍ତି—କବିତାର ଉଚ୍ଛଳତରଙ୍ଗ ଯେପରି ଗିରି ନିର୍ଝରିଣୀ ତୁଲ୍ୟ ସରଳ, ତରଳ ଓ ପ୍ରାକୃତିକ ଭାବମୟ ଭୂଷାର ନର୍ତ୍ତିତ ଛନ୍ଦରେ ମୃଦୁ ମୂର୍ଚ୍ଛନାର ଗୀତ ଗାଇ ଛୁଟିଆସେ, ସେପରି । ଭାଷାର ସରଳତା

ଓ ଉପଯୋଗିତା ଯିମିତ ହୃଦୟକୁ ରସାପ୍ଳୁତ କରିଦିଏ ସିମିତ ଅନ୍ତୁଚିକୋଠିର ଭାବ ପ୍ରାଣବନ୍ତ ହୋଇ ଅପୂର୍ବ ପୁଲକତାରେ ମାନବିକତାକୁ ଗୌରବମୟ କରିଅଛି ।

ବିଶେଷତଃ ଆଲୋଚନା କରିବାକୁ ଗଲେ ଗୋପବନ୍ଧୁଙ୍କ ଲେଖନୀ ନିଃସୃତ ରଚନାବଳୀ ଭାଷାଗତ ସୌନ୍ଦର୍ଯ୍ୟର ଉତ୍କର୍ଷତା, ସ୍ୱଦେଶ-ପ୍ରୀତିର ବିମୋହନତା, ପ୍ରକୃତି ସୁଷମା ଚିତ୍ରଣର ଅପୂର୍ବ କମନୀୟତା ବା ପାରଙ୍ଗମତା ଯିମିତ ଉଲ୍ଲୋଳ କଲ୍ଲୋଳ-ମାଧୁରୀ ସୃଷ୍ଟି କରିଛି, ସେପରି ନିର୍ମଳ ଓ ପୂତମୟ ବିଷ୍ଣୁ-ଭକ୍ତିର ରସିକତା ତାଙ୍କର ସମଗ୍ର କବିତ୍ୱୋପାଦାନକୁ ଏକ ସୂତ୍ରରେ ଗ୍ରଥିତ କରି ଉତ୍କଳ-ବାଣୀ-ହୃଦାବ୍ଜରେ ଅନବଦ୍ୟ ଉପମା ସୃଷ୍ଟି କରିଛି । ବାସ୍ତବିକ ଗୋପବନ୍ଧୁଙ୍କ ହୃଦୟରେ ଅଲୌକିକ କବିତ୍ୱ ପ୍ରତିଭାର ପ୍ରେରଣା ନଥିଲେ ସତେ କଣ ରାଜବନ୍ଦୀ ଗୋପବନ୍ଧୁ ରାଜନୀତିକ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇ କେବଳ ଅତ୍ୟଳ୍ପ ସମୟରେ କବିତାର ମାଧୁରୀ, ସରସତା, ବର୍ଣ୍ଣନ-ଚାତୁରୀ, ଶବ୍ଦ-ବିନ୍ୟାସର ଅପୂର୍ବ ମଞ୍ଜୁଳତା ତଥା ରସସୃଷ୍ଟିର ଦକ୍ଷତା ଯେପରି ପ୍ରାଣବନ୍ତ ହୋଇ ହୃଦ-ବିନୋଦନ କରୁଛି, ସମ୍ଭବ ହୋଇଥାନ୍ତା ! କବି ଗୋପବନ୍ଧୁ ଉପେନ୍ଦ୍ରଙ୍କ କାବ୍ୟ କବିତାକୁ ଲକ୍ଷ୍ୟ କରି

"ଗାଏ ତୁମ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

କହି ପ୍ରଶଂସା କରିଥିଲେ ହେଁ ତାଙ୍କର ପରି ଆଡ଼ମ୍ବରପୂର୍ଣ୍ଣ ଭାଷା କିମ୍ବା ଦନ୍ତାସ୍ଫୁଟିତ ଶବ୍ଦ-ବିଭବରେ ସେ କବିତା ଲେଖି

ନାହାନ୍ତି । ଯୁଗାନୁଯାୟୀ ଧର୍ମର ବଶବର୍ତ୍ତୀ ହୋଇ କେବଳ ସରଳ ଭାଷା ଓ କେତେକ ସ୍ଥଳବିଶେଷରେ ଅଭିବ୍ୟକ୍ତିର ବଳିଷ୍ଠତାକୁ ନେଇ ଖାଣ୍ଟି ଓଡ଼ିଆ ସାହିତ୍ୟ ଲେଖିଅଛନ୍ତି । ଏହି ଉକ୍ତିର ସତ୍ୟତା ପ୍ରତିପାଦିତ କରିପାରିବ ଯେତେ ଦିନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ 'ଧର୍ମପଦ'ର ଅସ୍ତିତ୍ୱ ବିରାଜିତ ହେଉଥିବ । ଏହି କବିତାରେ କାବ୍ୟିକ ସୌନ୍ଦର୍ଯ୍ୟ ଓ ଲଳିତ କଳାର ଅତି ସୂକ୍ଷ୍ମାନୁଭୂତିକୁ ଯେମନ୍ତ ରୂପ ଦେଇ ପଲ୍ଲୀପ୍ରାଣ ଗୋପବନ୍ଧୁ ପଲ୍ଲୀପ୍ରାଣକୁ ସ୍ପନ୍ଦିତ କରିଅଛନ୍ତି ତାହା ବାସ୍ତବିକ ଓଡ଼ିଆର ଓଡ଼ିଆତ୍ୱ ଓ ଜାତୀୟତାର ଉଜ୍ଜ୍ୱଳମୟ ଗୌରବ ବିଭୂତି ।

ପଲ୍ଲୀପ୍ରାଣ ଗୋପବନ୍ଧୁ ଆହୁରି ମଧ୍ୟ ବାତ୍ସଲ୍ୟ ରସର ମଧୁର ମନ୍ଦାକିନୀ ଧାରା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବୁହାଇ କବିତ୍ୱର ଖୁବ୍ ପରିଚୟ ଦେଇଅଛନ୍ତି । ପିମିତି ମନେ ହୁଏ କାବ୍ୟଯୁଗର ଆଦି ରସାତ୍ମକ ପ୍ରଖରତାରେ ବାତ୍ସଲ୍ୟ ରସ ଯେଉଁ ଆକୁଳ କ୍ରନ୍ଦନ କରି କେଉଁଆଡ଼େ ବିଲୀନ ହୋଇ ଯାଇଥିଲା—ସେହି ଚିହ୍ନର ପୁନଃ ଉଦ୍ଧାର ମାନି । କାରଣ ଗୋପବନ୍ଧୁଙ୍କ ପୂର୍ବବର୍ତ୍ତୀ ଯୁଗରେ ଯେଉଁ କାବ୍ୟ କବିତା ରଚିତ ହେଉଥିଲା ତାହା କେବଳ ଆଦିରସାତ୍ମକ ; କାବ୍ୟ-ନାୟିକା ସେଇଠି ମାତୃତ୍ୱ ଗୌରବ ଉପଲବ୍ଧି କରିବା ସୌଭାଗ୍ୟ ପାଇ ନଥିଲା । କେବଳ ପଞ୍ଚସଖା ଯୁଗର ବୈଷ୍ଣବୀୟ କବିଗଣ ଯଶୋଦାଙ୍କ ମୁଖରେ ଫୁଟାଇ ପାରିଥିଲେ ବାତ୍ସଲ୍ୟ ରସର ଭାବଧାରା । ଅତଏବ ଗୋପବନ୍ଧୁ ସେହି ଭାବକୁ ଅନୁସରଣ କରି ନିଜର ସାହିତ୍ୟକୁ ଜୀବନ୍ତ କରି ଅଛନ୍ତି । କରିବା ମଧ୍ୟ ସ୍ୱାଭାବିକ । କାରଣ ଜଗନ୍ନାଥଙ୍କ ନବାକ୍ଷରୀ ଭାଗବତରେ ବାଳ୍ୟକାଳୁଁ ଅନୁପ୍ରାଣିତ ହୋଇ **'Child is father of man'** ପ୍ରଶଂସା ଜନମୁଖରୁ ଯେତେବେଳେ

ଆଦାୟ କରି ପାରୁଥିଲେ ସେଇଠି ତାଙ୍କର ମହମାସ୍ମ ଜାଣିସ୍ମ ଲେଖମୀ କହେତୁ ଯେ ବାତ୍ସଲ୍ୟ ରସୋଦ୍ରେକ ନ କରିବ ! ଭାଗବତର ସେହି ପବିତ୍ର ଓ ମଧୁର ବାତ୍ସଲ୍ୟ-ରସ କବି ହୃଦୟରେ ଝଙ୍କୃତ ହୋଇ ନଥିବ ବୋଲି କିଏ କହିବ ! ଉଦାହରଣ ସ୍ୱରୂପ—

ପୁଅ ବାହାରିଛି ସହପାଠୀ ଲାଞ୍ଛିତ କଳଙ୍କ ପଦବୀରୁ ମୁକ୍ତି ପାଇଁ ପିତାଙ୍କ ଅନ୍ୱେଷଣରେ । ଏକଇରବଳା ନନ୍ଦନର ବିରହ ଯନ୍ତ୍ରଣା ମାତୃହୃଦୟ କିପରି ସହି ସମ୍ଭାଳି ରହିବ, ସେହି ଦୁଃଖରେ ଅଧୀର ହୋଇ ଶୋକାକୁଳ କଣ୍ଠରେ ମାତୃକଣ୍ଠ ଗାଇ ଉଠୁଛି—

"ମୋ ନେତ୍ରପିତୁଳି ଛାଡ଼ି କି ରେ ତୋତେ
ପାରିବି ମୁଁ କ୍ଷଣେ ବଞ୍ଚି
ମୋ ଅନ୍ଧାର ଘରେ ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଦୁକ କଞ୍ଚି ।
ଆହୁଲି ତୁ ମୋର ଜୀବନ ବୋଇତେ
ଅନ୍ଧର ଆଶା ଲଉଡ଼ି
ତୋ ବିନେ ନ ଚଳି ଯିବି ସିନା ବାବୁ
ଶୋକ-ସିନ୍ଧୁ ଜଳେ ବୁଡ଼ି ।"

ଉପରୋକ୍ତ ପଂକ୍ତିଗୁଡ଼ିକରେ ବାତ୍ସଲ୍ୟ ରସୋଦ୍ଦୀପକ ଭାବରାଶି ଅବିଶ୍ରାନ୍ତ ଗତିରେ ଯିମିତି ବର୍ଷାଧାର ପରି ଝରଝର ହୋଇ ଝରି ଅତୀବ ହୃଦ୍ୟ ହୋଇଛି, ତେମନ୍ତ ମଧ୍ୟ ଖାଣ୍ଟି ଓଡ଼ିଆ ପଲ୍ଲୀ ସୀମନ୍ତିନୀଙ୍କ ହୃଦୟର କୋମଳତାକୁ ପ୍ରକାଶ କରିଅଛି । ପୁଣି ସେମାନଙ୍କର ଅବିକଳ କଥାଭାଷାକୁ ସାହିତ୍ୟରେ ରୂପଦାନ କରି ଓଡ଼ିଆ ରମଣୀର ମୃଦୁ ଭାବଗୌରବକୁ ଫୁଟାଇ ଅଛନ୍ତି । ଉଦାହରଣ ସ୍ୱରୂପ—ପତିବିରହିବଧୂର ପତିସ୍ମୃତି ସୁମରି

କାନ୍ଦି ଉଠୁଛି । ସନ୍ଦେହ ଓ ବିସ୍ମୟାକୁଳରେ ବାର ବରଷର ଧରମା ପୁଅ ମା' ଆଖିରୁ ଲୁହ ପୋଛୁଛି, ଏପରି ସମୟରେ ମାତୃ-ହୃଦୟ ତତ୍‌କ୍ଷଣାତ୍ ସମସ୍ତ ଦୁଃଖ ପାସୋରି ଦେଇ ସନ୍ତାନର ଏମନ୍ତ ସହାନୁଭୂତି ଉପଭୋଗ କରି ବାତ୍ସଲ୍ୟ ରସରେ ଆତ୍ମହରା ହୋଇ ଗଦ୍‌ଗଦ୍ କଣ୍ଠରେ ଗାଇ ଉଠୁଛି ସରଳ, ତରଳ ଭାବରେ—

"ମରିଯାଏ ମୁଁ ଲୋ ! କି ବିକଳେ ଲୁହ
ପୋଛୁ ଦିଅଇ ମୋ' ଧନ"

କିମ୍ବା

ପିତା ଅନ୍ୱେଷଣେ ପୁତ୍ରର ଗମନୋଦ୍ୟମ ପୂର୍ବରୁ ଧନମାଳୀ ଧର୍ମପଦର ବୁଦ୍ଧି ଓ ଚତୁରତାରେ ବିମୁଗ୍‌ଧ ହୋଇ ହରଷ ଓ ସନ୍ଦେହାଭିଭୂତା ମାତୃ-ପ୍ରାଣ କହି ଦେଉଛି,—

"ମରିଯାଏ ଆହା ମୋ ଧନମାଳୀର
କେଡ଼େ ବୁଦ୍ଧି କି ସାହସ ।"

ଏଇଠି 'ମରିଯାଏ ଆହା' ଏବଂ 'ମରିଯାଏ ମୁଁ ଲୋ !' ଅଭିବ୍ୟକ୍ତିରେ ଅନ୍ତରର କେତେ ଆଶା, ଆକାଙ୍‌କ୍ଷା ଓ ପ୍ରୀତି ବା ଆନନ୍ଦ ଉଦ୍‌ବେଳିତ ହୋଇ ଉଠିଛି, ଅବର୍ଣ୍ଣନୀୟ । କେବଳ ଯେ ମାତୃ-ହୃଦୟ ଏପରି କହିବ, ତାହା ନୁହେ । ସ୍ନେହ କିମ୍ବା ଦୁଃଖରେ ଅଭିଭୂତ ହୋଇ ଯେତେବେଳେ ଜାଗିଉଠେ ଓଡ଼ିଆ-ପଲ୍ଲୀ-ରମଣୀ ହୃଦୟ ସେତିକିବେଳେ କହିଦିଏ ନିଭୃତ-ଅନ୍ତର-ମୂର୍ଚ୍ଛିତ ସେହି ପଦକ 'ମରିଯାଏ ଆହା !' କିମ୍ବା 'ମରିଯାଏ ମୁଁ ଲୋ !' । ବିଶେଷତଃ କହିବାକୁ ଗଲେ ସେହି ପଦକ ଓଡ଼ିଆ ପଲ୍ଲୀ ରମଣୀର ମୁଖାଳଙ୍କାର । ତା' ବୋଲି ଯହିଁ ତହିଁ ବ୍ୟବହାର କଲେ ତା'ର ମୃଦୁ ମୂର୍ଚ୍ଛନା ହୃଦୟସ୍ପର୍ଶୀ ହୁଏ ନା; ଯେଉଁଠି ଯାହା ଘଟିବା କିମ୍ବା

ଶୁଣିବାର ଅବକାଶ ନଥାଏ ସେଇଠି ଯଦ୍ୱାରା ଅବକାଶର ସୂଚନା ଆସେ, ସେଇଠି ।

ଏପରି କେତେ ଯେ ଶବ୍ଦ-ମାଧୁର୍ଯ୍ୟ ତାଙ୍କର ରଚନାବଳୀର ଛନ୍ଦେ ଛନ୍ଦେ ଫୁଟିଉଠିଛି—ଅତ୍ୟନ୍ତ ଭାବଗର୍ଭକ ରୂପେ, ତାର ଇୟତ୍ତା ନାହିଁ । ଏହି ଯୁ ସାହିତ୍ୟ, ନାହିଁ ସେଠି ଭାଷା-ଆଡ଼ମ୍ବର କମ୍ବା ବୃଥା କସରତ । ସରଳ, ତରଳ ଓ ମନମତାଣିଆ ଭାଷା ଦେଇ ସାହିତ୍ୟ ସୃଷ୍ଟି ହୋଇଅଛି—ଜାତୀୟତାର ବାସ୍ତବ ଚିତ୍ର ନେଇ । ଯେଉଁଥିପାଇଁ ଆଜ ଜାତୀୟ-କବି ରୂପେ ଗୋପବନ୍ଧୁ ବରେଣ୍ୟ ଓ ପୂଜ୍ୟ ।

ଏତଦ୍‌ବ୍ୟତୀତ ତାଙ୍କର ଲେଖନୀ ଗଦ୍ୟ-ସାହିତ୍ୟରେ ମଧ୍ୟ ମାଧୁର୍ଯ୍ୟ ଫୁଟାଇ ଅଛି । ଉପନ୍ୟାସ ପିତା ସେନାପତିଙ୍କ ବଳିଷ୍ଠ ଲେଖନୀ ମୁନରେ ଓଡ଼ିଆ ଗଦ୍ୟ-ସାହିତ୍ୟର ପ୍ରକୃତ ଭିତ୍ତି ସ୍ଥାପିତ ହୋଇଥିଲେ ହେଁ ତା'ର ସୁଦୃଢ଼ତା ଏବଂ ମନୋହାରିଣୀ ପ୍ରଭା-ମାଧୁର୍ଯ୍ୟ ଅତ୍ୟନ୍ତ ସହକାରରେ ରୂପ ପାଇଛି ଗଳ୍ପ-ରସିକ ଗୋପବନ୍ଧୁଙ୍କ ସାହିତ୍ୟ-ସାଧନ ଭିତରେ । ପଦ୍ୟ ସାହିତ୍ୟରେ ସେ ଯିମିତି ପାରଙ୍ଗମତା ହାସଲ କରିଥିଲେ ସିମିତି ମଧ୍ୟ ଗଦ୍ୟ ସାହିତ୍ୟରେ ବିଭିନ୍ନ ଧରଣର ଉଚ୍ଚ କୋଟିର ଗବେଷଣାମୂଳକ ପ୍ରବନ୍ଧ, ଆଲୋଚନା ପ୍ରଭୃତି 'ସତ୍ୟବାଦୀ ଏବଂ 'ସମାଜ' ପତ୍ରିକା ଦ୍ୱାରା ପ୍ରକାଶିତ କରି ଜାତୀୟ ଗଦ୍ୟ-ପୀଠକୁ ଏକ ସୁଷମାମୟ ନିକୁଞ୍ଜରେ ପରିଣତ କରିଥିଲେ । ବିଶେଷତଃ ସେ ଥିଲେ ଗଦ୍ୟ ଓ ପଦ୍ୟ ଉଭୟ କଳାରେ ନୂତନ ଶୈଳୀ ଓ ସ୍ୱତନ୍ତ୍ରତାର ପ୍ରବର୍ତ୍ତକ । କାରଣ ସେନାପତିଙ୍କ ଗଦ୍ୟ ଲେଖାରେ ଯେ କେତେକ ଯାବନିକ ପଦ ବ୍ୟବହୃତ ହୋଇଅଛି, ସେହିଗୁଡ଼ିକ ପ୍ରତ୍ୟେକ ଅଞ୍ଚଳର ଓଡ଼ିଆଭାଷୀ ଲୋକମାନେ ବୁଝିବା ମୁସ୍କିଲ । କିନ୍ତୁ ଗୋପବନ୍ଧୁ

ଏପରି ଓଡ଼ିଆଭାଷା ବ୍ୟବହାର କରିଅଛନ୍ତି ଯେପରି କି ଓଡ଼ିଶାର ପ୍ରତ୍ୟେକ ପ୍ରାନ୍ତର ଓଡ଼ିଆ ମାତ୍ରକେ ହୃଦୟଙ୍ଗମ କରି ପାରିବେ, ଭାବ-ମଧୁର ଆସ୍ୱାଦ । ପୁଣି ସେ ଯେପରି ଭାଷା ଓ ଭାବ ପ୍ରକାଶର ମୌଳିକତା ଓ ସୁନ୍ଦରତା ରକ୍ଷା କରି ଯେଉଁ ନୂତନ ଦୃଷ୍ଟିକୋଣ ବା ଶୈଳୀ ଉଦ୍ଭାବନ କରି ଅଛନ୍ତି ତାହା ଓଡ଼ିଆ ସାହିତ୍ୟରେ ଯୁଗାନ୍ତର ସୃଷ୍ଟି କରିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ଆଦର୍ଶ କି ତାଙ୍କର ପରବର୍ତ୍ତୀ ସାହିତ୍ୟସେବୀଗଣଙ୍କୁ ଆଜି ସୁଦ୍ଧା ପ୍ରଭାବିତ କରି ଗଦ୍ୟ-ସାହିତ୍ୟର ମାଧୁର୍ଯ୍ୟ ବଜାଏ ରଖିଛି । ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସ୍ୱଚ୍ଛ ହୃଦୟ, ଜାତୀୟ-ପ୍ରୀତି, ସାଧୁତା, ନିଃସ୍ୱାର୍ଥପରତା ଏବଂ ସତ୍ୟର ମହିମାମୟ ତେଜରାଶିର ନିର୍ଦ୍ଦେଶ ଯିମିତି ପଦ୍ୟ ସାହିତ୍ୟରେ ପ୍ରତିବିମ୍ବିତ ହୋଇଅଛି, ଗଦ୍ୟ-ସାହିତ୍ୟ ମଧ୍ୟ ତଦ୍ରୂପ ରୂପ ଦେଇ ଓଡ଼ିଆ ସାହିତ୍ୟପୀଠରେ ଏକ ଗୌରବାବହ ଆସନ ଗ୍ରହଣ କରିଅଛି । ଆହୁରି ମଧ୍ୟ ଓଡ଼ିଆ ଭାଷାକୁ ପରିପୁଷ୍ଟ କରିବା ନିମନ୍ତେ ସଂସ୍କୃତ ସାହିତ୍ୟରୁ ବହୁ ଉଦ୍ଧୃତାଂଶ ପ୍ରକାଶ କରି ନିଜର ବଳିଷ୍ଠ ମତ ସହ ବିଭିନ୍ନ ଲେଖା ପ୍ରକାଶ କରିଛନ୍ତି । ତାହା ଯେତେ ଚମତ୍କାର ସେତେ ଅସାଧାରଣ ପ୍ରତିଭାର ପରିଚୟସୂଚକ ।

ଏଇଠି ଆହୁରି ମନେ ରଖିବା ଉଚିତ ଯେ ଭାଷା ଓ ଭାବ ମାଧ୍ୟମରେ ସତ୍ୟର ପ୍ରତିଷ୍ଠା ଯେପରି ସାହିତ୍ୟ କ୍ଷେତ୍ରରେ ସମ୍ଭବ-ଯୋଗ୍ୟ ହୋଇ ଲୋକ-ଚରିତ୍ର ଗଠନ କରିବ ତଦ୍ରୂପ ପନ୍ଥା ସେ ଉଦ୍ଭାବନ କରିଥିଲେ । ନିଜେ ସେ ଯେପରି ଜଣେ ସତ୍ୟବାଦୀ ଓ ଚରିତ୍ରବାନ ତାଙ୍କର ସାହିତ୍ୟ ମଧ୍ୟ ତଦ୍ରୂପ ଆଦର୍ଶର ପ୍ରତୀକ ବା ନିଶାଣ । ସତ୍ୟ ସବୁଠି କବିର ଗ୍ରହଣୀୟ ବା ଆଦରଣୀୟ ହେବା ଦୃଷ୍ଟି ତେବେ ଗୋପବନ୍ଧୁ ସେହି ମତର ପ୍ରକୃତ ପୃଷ୍ଠପୋଷକ ।

ସତ୍ୟ ବୋଲି ଯାହା ପ୍ରକଟିତ ତାହା ନିର୍ଭୀକ ସହକାରେ ଗ୍ରହଣ କରିବାକୁ ସତ୍ୟାନୁସନ୍ଧିତ୍ସୁ ଗୋପବନ୍ଧୁ କୁଣ୍ଠାବୋଧ କରୁ ନଥିଲେ । କାରଣ ସେ ବେଶ୍ ବୁଝି ପାରିଥିଲେ ଯେ ସତ୍ୟର ଜୟ ଅନିବାର୍ଯ୍ୟ ଓ ଅସଶ୍ୟମ୍ଭାବୀ । ଅବିରାମ ଗତିରେ ଯେତେ ଦୁଃଖ କଷ୍ଟ ଆସୁ ନା' କାହିଁକି ସତ୍ୟ ସାଧନରେ ହିମାଦ୍ରି ପରି ଅଟଳ ଓ ଅଚଳ ରହିବା ମାନବିକତାର ଉତ୍କର୍ଷ ଯେପରି, ଆଧ୍ୟାତ୍ମିକତାର ବିକାଶ ମଧ୍ୟ ସେପରି । ତେଣୁ ସେ କହିଅଛନ୍ତି—

"ହେଉ ପଛେ ହେବ ଆଉ ଯେ ଯାତନା,
ସତ୍ୟେ ରହି କର ସତ୍ୟର ସାଧନା ।
ସତ୍ୟେ ମାନବର ସତ୍ତ୍ୱ ପରିକାଶେ,
ଭୀମ ରାଜଶକ୍ତି ନାଶେ ସତ୍ୟ ପାଶେ ।"

ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଜଣାଯାଏ ଯେ ଜନତାର ମନସ୍ତତ୍ତ୍ୱକୁ ସେ ଅତ୍ୟନ୍ତ ନିବିଡ଼ ଭାବରେ ପର୍ଯ୍ୟାଲୋଚନା କରି ସତ୍ୟାନୁସନ୍ଧିତ୍ସୁ ପ୍ରାଣରୁ ସନ୍ଦେହ ଓ ଦୁର୍ବଳତାକୁ ଦୂର କରି ଅଛନ୍ତି । ସତ୍ୟର ମହତ୍ତ୍ୱ ପ୍ରତି ଏକ ନିର୍ଭର ପ୍ରତିଶ୍ରୁତି ଦେଇ ଅଛନ୍ତି ମଧ୍ୟ । ଯେହେତୁ ଧର୍ମୋଚିତ କର୍ମ କରିବା ମନୁଷ୍ୟର ଆଦିମ ପ୍ରବୃତ୍ତି ଏବଂ ଆଦର୍ଶ ମଧ୍ୟ । ଅଥଚ ସମୟାନୁକ୍ରମେ ମନୁଷ୍ୟ ସେହି ନିର୍ମଳ ସତ୍ୟକୁ ପ୍ରତିପାଳନ କରିବାରେ ପରାଙ୍ମୁଖ ହୁଏ କାରଣ ସତ୍ୟପଥ ସଦାସର୍ବଦା ଜ୍ୱଳନ୍ତାଗ୍ନି ପରି ଉତ୍ତପ୍ତ । ସେଇଟି ଉପଲବ୍ଧ କରିବା ମନୁଷ୍ୟ ପକ୍ଷେ ଦୁଃସାଧ୍ୟ । ସେହିହେତୁ କାଳେ ସତ୍ୟ-ସାଧକ-ପ୍ରାଣ ସେହି ନିଦାରୁଣ ଯନ୍ତ୍ରଣା ମଧ୍ୟରେ ଅବିଚଳିତ ରହି ନପାରି ସତ୍ୟଚ୍ୟୁତ ହୋଇପାରେ, ଏହି ଆଶଙ୍କାରେ ଏଇଟି ସେ ନିର୍ଭର ପ୍ରତିଶ୍ରୁତି ଦେଇ ଅଛନ୍ତି । କେବଳ ଯେ ସତ୍ୟର ମାହାତ୍ମ୍ୟ ସକାଶେ ତା'ନୁହେଁ । ମାନବର ଜୀବନ ସତ୍ତ୍ୱ ପ୍ରକାଶ ନିମନ୍ତେ

ସତ୍ୟର ଆବଶ୍ୟକତା ବୋଲି ପ୍ରଲୋଭନ ବା ପ୍ରତାରଣାରେ ସତ୍ୟାଦର୍ଶକୁ ପ୍ରତ୍ୟାଖ୍ୟାନ କରିବା ବିଲ୍‌କୁଲ୍ ବିଚିତ୍ରଯୋଗ୍ୟ ନୁହେ । କିନ୍ତୁ ସେହି ସତ୍ୟର ମାହାତ୍ମ୍ୟ ସକାଶେ ନିଜେ ଅସହ୍ୟ ଦୁଃଖ ଯନ୍ତ୍ରଣା ଅବିରତ ସହ୍ୟ କରୁଥିବା ବେଳେ ଯଦିଓ ପୁଣି ଆହୁତ ହୁଏ, ତୀବ୍ର ବେଦନାର ନିଷ୍ଠୁର କଷାଘାତ ସେଇଠି ସାଧକର ସତ୍ୟାଗ୍ନି ପରୀକ୍ଷିତ ଶକ୍ତ ହୃଦୟ ଆକୁଳ କ୍ରନ୍ଦନରେ ମ୍ରିୟମାଣ ହୋଇ ସାଧାରଣତଃ ବିତୃଷ୍ଣା ବଶତଃ ସତ୍ୟ ପ୍ରତି ଆସ୍ଥା ହରାଏ । ଏହା ଯେତେ ଦୁର୍ବଳତା ହେଉ କିମ୍ବା ଦ୍ରାକ୍ଷାରସ ଲିଳାପ୍ସିତ ଶିବାର ପରିଣତି ହେଉ ତାହା ଯେ ନିରାଟ ବାସ୍ତବ, କେହି ହେଲେ ଅସ୍ୱୀକାର କରିବେ ନାହିଁ । କାରଣ ମାନବ ଯେ ଭଗବାନ ନୁହେ ଯଦ୍ଦ୍ୱାରା କି ସେ ଯେତେ ଦୁଃଖ କଷ୍ଟର ସମ୍ମୁଖୀନ ହେଲେ ସୁଦ୍ଧା ସହ୍ୟ କରିବ । ମାୟା ମୋହାବଦ୍ଧ ଜୀବ ବିଶିଷ୍ଟ ମାନବ ତଥାପି ତାର ଜ୍ଞାନ ଥିବା ଯୋଗୁଁ କୈବଲ୍ୟ ଜୀବନ ନିମିତ୍ତ ଆପ୍ରାଣ ଚେଷ୍ଟା କରେ—ଯେତେ ପ୍ରକାର ଦୁଃଖକଷ୍ଟ ଭୋଗ କରି । ତା'ବୋଲି ଦୁଃଖ ପରେ ଦୁଃଖ ଓ କଷ୍ଟ ପରେ କଷ୍ଟ ଭୋଗିଲେ ତାର ଦମ୍ଭ ଓ ଧୈର୍ଯ୍ୟ ରହିବ କେତେକେ ? ତେଣୁ ସେହି ଦଗ୍ଧୀଭୂତ ପ୍ରାଣ ଯେପରି ଶତ ଯନ୍ତ୍ରଣା ସତ୍ତ୍ୱେ ସତ୍ୟ ସାଧନରେ ବ୍ରତୀ ହୁଏ ସେପରି ପ୍ରେରଣା ଓ ଉତ୍ସାହ ଗୋପବନ୍ଧୁ ଜାତ କରାଇ ଥିଲେ । ସତ୍ୟ ପ୍ରତି ଯେଉଁ ମମତା, ସ୍ନେହ ଓ ଆଦର ସାଧକର ଆଦିମ ପ୍ରବୃତ୍ତି ନିମାନ୍ୟ ପଥରେ ଉନ୍ନୀତ ହୋଇ ପୂର୍ଣ୍ଣ ସ୍ଫୁଟିତ ହେବାକୁ ଯାଉଛି ତାହା ଯେପରି ଶିଶିରସିକ୍ତ ପଦ୍ମ ସଦୃଶ ବିଭ୍ରାଟ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ମଉଳି ନଯାଏ—ସେହି କର୍ମପନ୍ଥା ସୃଷ୍ଟି କରି ସାଧକ ପ୍ରାଣରେ ଆଣିଛନ୍ତି ଅପୂର୍ବ ଉତ୍ସାହ ଓ ଅଦ୍ୱିତୀୟ ଉଦ୍ଦୀପନା ।

ଯେଉଁ ଉଲ୍ଲାସରେ ସ୍ୱୟଂ ଗୋପବନ୍ଧୁ 'ଧରଣୀ-ବିପତ୍ତି' ପ୍ରତି ଭ୍ରୂକ୍ଷେପ ନକରି ସତ୍ୟାଦର୍ଶ ପାଳନ କରୁଥିଲେ ଏବଂ ସତ୍ୟ ପ୍ରତି ତାଙ୍କର ମମତା ଓ ସ୍ନେହ ଅତୁଟ ରଖିଥିଲେ, ଏଇଟି ମନେ ରଖିବା ଉଚିତ ଯେ ଏହି ସତ୍ୟପ୍ରୀତି କେବଳ ବୟୋବୃଦ୍ଧି ସମୟରେ ଜାତ ହୋଇ ନାହିଁ । ଜାତ ହୋଇଛି ବିକଶିତ କୁସୁମ-ଭଳି ହୋଇ ଶୈଶବାବସ୍ଥାରୁ ; ନୋହିଥିଲେ ସାମାନ୍ୟ ଜଣେ ଶିକ୍ଷକ ନିକଟରେ ପୁରୀର ତତ୍କାଳୀନ ଗୋରା ସର୍ଜନ (ଯେଉଁ ସମୟରେ କି ବ୍ରିଟିଶ୍ ରାଜତ୍ୱ ନିକଟରେ ଭାରତୀୟମାନେ ପଶୁଭଳି ବ୍ୟବହାର ପାଉଥିଲେ, ସେହି ସମୟରେ) ନିଜର ଦୋଷ ସ୍ୱୀକାର ନିମିତ୍ତ କ୍ଷମାପ୍ରାର୍ଥୀ ହୋଇଥାନ୍ତା !!!

'ଆଦର୍ଶ ଓ ଆକାଙ୍କ୍ଷା' ଶୀର୍ଷକ ସେ ଯେଉଁ ପ୍ରଥମ ପ୍ରକାଶିତ ଲେଖାଟି ଲେଖିଥିଲେ, ତହିଁରେ ଉଲ୍ଲେଖ କରି ଅଛନ୍ତି— "ଆମ୍ଭମାନଙ୍କର ଭାଷା, ଭାବ, କ୍ରିୟା ସମସ୍ତ ସତ୍ୟର ପନ୍ଥା ଅନୁସରଣ କରିବା ଉଚିତ ଏବଂ ସେଥି ନିମନ୍ତେ ସବୁ ପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଏ ଭାବମାନ ସମାଜରେ ଯଥାସମ୍ଭବ ପ୍ରଚାର କରି ମାତୃଭୂମିକୁ ନବ ନବ ଆଶା ଓ ଉତ୍ସାହରେ ଉଦ୍ଦୀପିତ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ।" ଏହି ଯେଉଁ ଉଚ୍ଚକୋଟିର ଭାବରାଶି ଉଦ୍‌ବେଳିତ ହୋଇ ଝରି ପଡ଼ୁଛି ତାହା ଯେତେ ନିଷ୍ଠାପରବଶ ସାଧନାର ପରିଣତି ହେଉ ନା କାହିଁକି ସତ୍ୟ, ଶିବ, ସୁନ୍ଦରର ଏକ ପ୍ରଚ୍ଛଳ ପ୍ରତିବିମ୍ବ ପ୍ରଦାନ କରିଅଛି—କବି ଯେହେତୁ ସତ୍ୟ, ଶିବ, ସୁନ୍ଦରର ପୂଜକ, ଯା'ର ପ୍ରେରଣା କବି ହୃଦୟରେ କବିତ୍ୱର ମନୋହର ଭଣ୍ଡାର ସୃଷ୍ଟି କରେ ଏବଂ ଲେଖନୀର ଗୌରବ ଚିରଞ୍ଜୀବୀ କରେ । ଅତଏବ ଗୋପବନ୍ଧୁ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ବିଜ୍ଞ ଦୃଷ୍ଟିରେ

"ସତ୍ୟର ପନ୍ଥା ଅନୁସରଣ କରିବା ଉଚିତ" କହି ଭାଷା ତଥା ସାହିତ୍ୟ ମଧ୍ୟରେ ତାହା ପ୍ରଚାର କରି ଅଛନ୍ତି । କାରଣ ଅସିଠାରୁ ମସି ବଡ଼ **Pen is more powerful than sword.** ଯାହା ଆମେ ଶତଥର ବ୍ୟକ୍ତ କଲେ ଉପକାରିତା ଲଭି ପାରିବା ନାହିଁ ମସିର ଏକ ପଦ ଲେଖାରେ ତାର ପ୍ରଭାବ ଆମର ଅଶେଷ ଉପକାର ସାଧନ କରେ ଏବଂ ଜନମନୋବୃତ୍ତିକୁ ପ୍ରଭାବିତ କରିପାରେ । ତେଣୁ ସତ୍ୟର ମହିମାମୟ ଆଦର୍ଶ ସାହିତ୍ୟ କ୍ଷେତ୍ରରେ ସେ ସୃଷ୍ଟି କରିଥିଲେ । କାରଣ ସତ୍ୟର ବିଲୋପରେ ମାନବିକ ପ୍ରବୃତ୍ତି ଦେବତ୍ୱ ଲଭିବା ପରିବର୍ତ୍ତେ କଳୁଷିତ ହୋଇଥାଏ, ସଦ୍ଭାବ କ ଦୟା, ଧର୍ମ ପ୍ରଭୃତି ସଦ୍‌ଗୁଣରାଜି ହବା ସ୍ୱପ୍ନରେ ପରିଣତ ହୁଏ । ସେହିହେତୁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସତ୍ୟ ନିକଟରେ ନତମସ୍ତକ ହୋଇ ଗୀତାର ପ୍ରାରମ୍ଭରେ ବନ୍ଦନା କରି ଅଛନ୍ତି ପୁଣି ଆର୍ଯ୍ୟର ଶ୍ରେଷ୍ଠଗ୍ରନ୍ଥ ବେଦ ମଧ କହିଅଛି—

"ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ"

କିମ୍ବା

"ଏତଦାତ୍ମ୍ୟ ମିଦଂ ସର୍ବଂ ତତଃ ସତ୍ୟଂ ତତ୍ତ୍ୱମସି ।"

ସତ୍ୟ ଯେହେତୁ ବ୍ରହ୍ମ ଓ ଆତ୍ମଶୁଦ୍ଧିର ମହୌଷଧି, ଏହି ସତ୍ୟ ଯୋଗୁଁ ଚନ୍ଦ୍ର ସୂର୍ଯ୍ୟ ଉଦିତ ହୁଅନ୍ତି—ଏହି ସତ୍ୟ ଯୋଗୁଁ ଅନନ୍ତ-ଅଗାଧ-ନୀଳାମ୍ବୁ ପାରାବାର କୂଳ ନଲଂଘି ଦୁନିଆକୁ ଅଭୟ ଦେଇଛି । ସତ୍ୟରେ ଲୋକ ପ୍ରତିଷ୍ଠିତ । ପୁଣି ସତ୍ୟରୁ ଅମୃତ ନିର୍ଗତ ହୁଏ ମଧ । ତେଣୁ ତୈତ୍ତିରୀୟ ଉପନିଷଦ୍ କହେ (୧-୧୧-୧) ଯଥା:—

"ସତ୍ୟେନାର୍କଃ ପ୍ରତପତି,
ସତ୍ୟେନାପ୍ୟାୟତେ ଶଶୀ,

ସତ୍ୟେନାମୃତମୁଦ୍‌ଭୁତଂ
ସତ୍ୟେ ଲୋକଃ ପ୍ରତିଷ୍ଠିତଃ ।”

ଅତଏବ ସତ୍ୟ ହେଉଛି ସର୍ବାପେକ୍ଷା ଶ୍ରେଷ୍ଠ ଧର୍ମ, ଯାହାକି ଏବେ ଅଛି, ଆଗେ ଥିଲା ଓ ଭବିଷ୍ୟତରେ ମଧ୍ୟ ଥିବ । ପୁଣି ସୃଷ୍ଟି ପୂର୍ବରେ ଯା'ର ସତ୍ତା ଅନୁଭୂତ ହେଉଥିଲା ବୋଲି ଋଗ୍‌ବେଦ କହୁଛି—“ସତ୍ୟେନ ଗ୍ରେଭବତା ଭୂମିଃ” ଅର୍ଥାତ୍ ସତ୍ୟରୁ ଭୂମିର ସୃଷ୍ଟି । ସେହି ଚିରନ୍ତନ ଓ ଅବିନଶ୍ୱର ସତ୍ତା ସର୍ବାପେକ୍ଷା ଯେ ଶ୍ରେଷ୍ଠ କେହି ହେଲେ ଅସ୍ୱୀକାର କରିବେ ନାହିଁ । ମହାଭାରତରେ ଏଥି ଯୋଗୁଁ ସତ୍ୟର ମୂଲ୍ୟ ନିରୂପିତ ହୋଇ କୁହାଯାଇଛି ଯେ—

“ଅଶ୍ୱମେଧ ସହସ୍ରଂ ଚ
ସତ୍ୟଂ ଚ ତୁଲୟାଧୃତଂ,
ଅଶ୍ୱମେଧ ସହସ୍ରେଷୁ
ସତ୍ୟମେବାତିରଚ୍ୟତେ ।”

ଅର୍ଥାତ୍—ସହସ୍ରେ ଅଶ୍ୱମେଧ ଯଜ୍ଞ ଅପେକ୍ଷା ସତ୍ୟ ହେଉଛି ସର୍ବଶ୍ରେଷ୍ଠ ।

ଏହି ଶକ୍ତିର ଅଲୌକିକ ପ୍ରେରଣାରେ ମାନବର କଳୁଷିତ ପ୍ରବୃତ୍ତି ସଂସ୍କାରଯୁକ୍ତ ହୋଇ ଐଶ୍ୱର୍ଯ୍ୟାଲୋକରେ ଉଦ୍ଭାସିତ ହୁଏ, ଆତ୍ମାର ସଙ୍କୁଚିତ ଚେତନାକୁ ପରିବ୍ୟାପ୍ତ କରି ମହାମୟ କରେ, ତ୍ରିତାପ ଯନ୍ତ୍ରଣାରୁ ରକ୍ଷା କରି ମୋହ ଅନ୍ଧକାରାଚ୍ଛନ୍ନ ମାନବ ସମାଜକୁ ଦିଏ ପ୍ରଦୀପ୍ତ ଆଲୋକ, “ଚିନ୍ମୟ ଘନ ରସମୟ କୃଷ୍ଣ, ଆନନ୍ଦରୂପିଣୀ ରାଧା”ଙ୍କ ପଦପ୍ରାନ୍ତରେ ମୁକ୍ତିକାମୀ ହୃଦୟକୁ ଦିଏ ମୁକ୍ତି ଓ ନିରାନନ୍ଦ ପୃଥିବୀରେ କରେ ଆନନ୍ଦ ସଞ୍ଚାର ।

ଅତଏବ ଗୋପବନ୍ଧୁ ଏହି ସୂକ୍ଷ୍ମ ଦୃଷ୍ଟିରେ ସତ୍ୟର ମହିମା ଭାଷା ଓ ଭାବର ଐକାନ୍ତିକ ମିଳନ-ମାଧୁର୍ଯ୍ୟରେ ଫୁଟାଇ

ଜନମନକୁ ଆହ୍ଲାଦିତ କରିବା ସଙ୍ଗେ ସଙ୍ଗେ ସେଥିପ୍ରତି ପ୍ରତ୍ୟେକ ମାନବ ଅନ୍ତରକୁ ପ୍ରବର୍ତ୍ତାଇଛନ୍ତି । ଧର୍ମପ୍ରାଣ ହିନ୍ଦୁ ଜାତି ନିଜର ହୃତ ଗୌରବକୁ ପୁନରପି ଯେପରି ଫେରି ପାଇବ ସେହି ପ୍ରେରଣାରେ ଶିବି, ନଳ, ରାମଚନ୍ଦ୍ର, ଯୁଧିଷ୍ଠିର, କର୍ଣ୍ଣ, ଦଧୀଚି ପ୍ରଭୃତିଙ୍କର ଅପୂର୍ବ ସତ୍ୟ ଓ ତ୍ୟାଗ ସାଧନାକୁ ସାହିତ୍ୟ ଜରିଆରେ ପ୍ରଚାର କରି ଅଛନ୍ତି । ସୁଖ, ସ୍ୱାଚ୍ଛନ୍ଦ୍ୟ, ପ୍ରୀତି ଓ ଶାନ୍ତି ପ୍ରତିଷ୍ଠାରେ ଯେପରି ଏହି ନରକଂକାଳମୟ ଦେଶ ଅମରାବତୀପୁରକୁ ନିନ୍ଦା କରିବ—ସେହି ଉଦ୍ଦେଶ୍ୟ ଓ ଲକ୍ଷ୍ୟରେ ସତ୍ୟର ପବିତ୍ର ଓ ପୂତମୟ ପଦତଳେ ଆତ୍ମନିବେଶ କରି ମିନତିଭରା ରାଗିଣୀ ଶୁଣାଇ ଅଛନ୍ତି । ସତ୍ୟର ମାହାତ୍ମ୍ୟ ବଜାୟ ରଖିବା ନିମିତ୍ତ "ସବୁ ପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେବା ଆମ୍ଭ-ମାନଙ୍କର କର୍ତ୍ତବ୍ୟ" ଅକ୍ଷରେ ଅକ୍ଷରେ ପାଳନ କରି ଅଛନ୍ତି । ପ୍ରାଣ ଯେଉଁଠି କାନ୍ଦୁଛି "ଏକକୁ ଅନାଇଁ ଆନ ନେଲୁ ଅଶ୍ରୁଧାର—ବହିବ ନାହିଁକି ଭେଦି ହୃଦୟ ଦୁଆର" କିମ୍ବା "କେବଳ ମାତ୍ର ସ୍ୱାର୍ଥର ଛଳନା" ବାସ୍ତବତାର ତୀବ୍ର ନୈରାଶ୍ୟରେ—ସେହିଠି କର୍ମଯୋଗୀ ଗୋପବନ୍ଧୁ ତିଳେ ସୁଦ୍ଧା ସତ୍ୟରୁ ବିଚ୍ୟୁତ ନୁହନ୍ତି । ସେ ସେଇଠି ଅଟଳ, ଅଚଳ ଓ ମହାମେରୁ ସମ ଗମ୍ଭୀର ଓ ନିଶ୍ଚଳ । କାରଣ ସେ ଜାଣନ୍ତି ଯେ ସତ୍ୟ ପାଶେ ଦୁନିଆର ଯାବତୀୟ ଦୁଃଖ ଯନ୍ତ୍ରଣା କିଛି ନୁହଁ, ଦୁଃଖାନୁରୂପୀ ସୁଖର କାରଣ ମାତ୍ର

ଏହିଠି ଲକ୍ଷ୍ୟ କରିବା କଥା ଯେ ବାସ୍ତବତାର ତୀବ୍ର କଷାଘାତରେ ଜର୍ଜରିତ ହୋଇ ସୁଦ୍ଧା ତାଙ୍କର ଅମଳ-କମଳ-ପ୍ରାଣ କର୍କଶତାର ତିଳେ ମାତ୍ର ଉପାଦାନ ଗ୍ରହଣ କରି ନାହିଁ । ବରଂ 'ଅଗ୍ନିହୁତାଶନେ ଯେସନ୍ତେ ସ୍ୱର୍ଣ୍ଣ ତେଜୀୟାନ' ସ୍ୱରୂପ ପ୍ରଶାନ୍ତ,

କୋମଳ ଓ ମଧୁର । ନୋହିଥିଲେ, ତାଙ୍କର କବିତା ଏତେ ସରଳ, ତରଳ ଓ ମଧୁର କାନ୍ତ ପଦାବଳୀ ଭୂଷଣରେ ଭୂଷିତ ହୋଇ ପାରି ନଥାନ୍ତା । ତାହା ଯେହେତୁ ଅନ୍ତରର ଭାଷା ଓ ଭାବର ପୂର୍ଣ୍ଣ ଅଭିବ୍ୟକ୍ତି, ତେଣୁ ସାହିତ୍ୟକୁ ଜୀବନର ସମାଲୋଚନା ବା **Criticism of life** ବୋଲି ସଜ୍ଞା ଦେବାର ତାତ୍ପର୍ଯ୍ୟ ଏଇଠି ବେଶ୍ ସୁସ୍ପଷ୍ଟ ।

ଏଇଠି ପୁଣି ଆମେ ହୃଦ୍‌ବୋଧ କରୁଁ ଉତ୍କଳ ଚରିତ୍ରର ମହାନ୍ ପରାକାଷ୍ଠା । କାରଣ ସତ୍ୟର ଆବିର୍ଭାବ ଯେଉଁଠି ସମ୍ଭବ ସେଇଠି ଚରିତ୍ର ଯେ ନିର୍ମଳ ଓ ମହତ୍, ଏହା ନିଃସନ୍ଦେହ—ଯେପରି ଧରିତ୍ରୀ ମଧ୍ୟ ରବିକର ପରଶରେ ଉଦ୍ଭାସିତ ହେବା ପୂର୍ବରୁ ପୃଥିବୀ ଅଧ୍ୟମାରନ୍ଧ୍ରରୁ ଉଷାଲୋକର ଆଭାସ ପାଇଥାଏ । ଏହା ଭାବିବା ଉଚିତ ନୁହେ ଯେ ସୁଚରିତ୍ରର ପରାକାଷ୍ଠା ସେ ଯିମିତି ଦେଖାଇ ଅଛନ୍ତି ତାହା ଏକ ଛଳନାପୂର୍ଣ୍ଣ କମ୍ବା ପ୍ରତାରଣା-ଜମ୍ବାଳ-ଗର୍ଭର ବିଷୟ-ବସ୍ତୁ । ତାହା ତାଙ୍କ ନିଭୃତ ଅନ୍ତରର ଅଭିବ୍ୟକ୍ତି ଓ ଆସକ୍ତି । ନଚେତ୍ ତାଙ୍କର କବିତାସୌଷ୍ଠବ ଏତେ ଦୂର ସରସ, ସୁନ୍ଦର ଓ ହୃଦ୍‌ଚୁମ୍ବିତ ହୋଇପାରି ନଥାନ୍ତା, ଏହା ସ୍ୱତଃସିଦ୍ଧ । ଏହି ପ୍ରସଙ୍ଗ ଅବତାରଣା କରି ପ୍ରାଚ୍ୟର ଶ୍ରେଷ୍ଠ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଜୟପୁରଠାରେ ଅନୁଷ୍ଠିତ ପି.ଇ.ଏନ୍. ଅଧିବେଶନରେ କହିଥିଲେ ଯେ—"**Unless you yourself is a great seer you cannot produce great literature** ।"

ବାସ୍ତବିକ ଏହା ସତ୍ୟ, କାରଣ ଚରିତ୍ର ମହାନ୍ ହେଲେ ଜୀବନ ମହତ୍ ହୁଏ ଏବଂ ସେହି ମହତାଲୋକ ହିଁ ଅନ୍ତର୍ନିହିତ ଆତ୍ମାକୁ ଆଲୋକିତ କରେ । ଯେଉଁଠି କି ଆତ୍ମା ସଚେତନ

ହୋଇ ପରମାତ୍ମାର ପଦପ୍ରାନ୍ତରେ ଲୀନ ହେବା ସକାଶେ ଯେଉଁ ଏକାଗ୍ରତା ଓ ମର୍ମନ୍ତୁଦ ବିରାଗିଣୀ ତୋଳିଥାଏ—ତାର ପ୍ରେରଣାରେ ସେ ଦେଖେ ସର୍ବ ଚରାଚର ବ୍ରହ୍ମମୟ ଏବଂ ଐଶ୍ୱରିକ ଶକ୍ତିର ସମୁଜ୍ଜ୍ୱଳ ଦୀପ୍ତି । ପୁଣି କର୍ମସମୂହ ତାର ଭଗବତ୍ ପ୍ରସାଦରେ ଲଭିଥାଏ ତୃପ୍ତି । ଏହି ଦିବ୍ୟ ପ୍ରଭାବ ଗୋପବନ୍ଧୁଙ୍କ ଜୀବନରେ ପ୍ରଜ୍ଜ୍ୱଳ ଭାବରେ ପ୍ରତିଭାତ । ସାଧାରଣ ନରକଙ୍କାଳ ଦେହରେ ମହାମାନବତ୍ୱ ଦର୍ଶନ କରିବା ସଙ୍ଗେ ସଙ୍ଗେ ପ୍ରଭୁ ବ୍ରହ୍ମବାଗିଙ୍କ ବଂଶୀର ଅନାହତ ବାଣୀ ମୂର୍ଚ୍ଛନା ସେ ମର୍ମେ ମର୍ମେ ଉପଭୋଗ କରି ବିଭୋର ହୋଇ ଅଛନ୍ତି ଏବଂ ସର୍ବ ସ୍ଥଳରେ ପରମ ବ୍ରହ୍ମଙ୍କର ସତ୍ତା ଖୁବ୍ ନିବିଡ଼ ଭାବେ ଉପଲବ୍ଧି କରି ଅଛନ୍ତି ।

ଏହି ଭାବ-ରତ୍ନ ସାହିତ୍ୟ ମାଧ୍ୟମରେ ଯେ ପାଉଁ, ତାହା ତାଙ୍କ ହୃଦୟର ଅବିନଶ୍ୱର ଅଳଙ୍କାର—ଯେହେତୁ କବିତା ହେଉଛି କବି ହୃଦୟର ସ୍ପନ୍ଦନ । ଯେଉଁଥିପାଇଁ କବିପ୍ରାଣ ଅହରହ ଅକ୍ଳାନ୍ତ ପରିଶ୍ରମ କରେ ସେହି ସେହି ଭାବସମୂହ ଜୀବନ୍ତ ହୋଇଉଠେ ତାର କବିତାରେ । ଯଦ୍ୟପି କବି ଏଇଠି ପ୍ରତାରଣାର ବଶବର୍ତ୍ତୀ ହୋଇ ଅର୍ଥାତ୍ ଲୋକାନ୍ତରାଳରେ ଚରିତ୍ରକୁ ଦୂଷିତ କରି ଚରିତ୍ର-ବାନ୍‌ର ପରିଚୟ ଦିଏ, ତେବେ ବୁଝି ରଖିବା ଉଚିତ ଯେ ପାପାଶୀ ହୃଦୟର ଲାଳସା ଯେତେ ଯତ୍ନ ସହକାରେ କବିତା ରଚନା କରୁ ନା କାହିଁକି, ସୁଧାଭାଣ୍ଡରେ ବିଷବିନ୍ଦୁ ସଦୃଶ ସେହି ହୃଦୟର ରୂପ ଏପରି ଭାବେ କବିର ଅଲକ୍ଷ୍ୟରେ ଚିତ୍ରିତ ହେବ, ଯାହାକି ସହଜେ ବାରିବା ଦୁଃସାଧ୍ୟ । ତେଣୁ ଯଥାର୍ଥରେ କୁହାଯାଇଛି 'Literature is the criticism of life' କିମ୍ବା ଜୀବନଇତିହାସ ହିଁ ସାହିତ୍ୟ । ସ୍ୱୟଂ ଗୋପବନ୍ଧୁ ମଧ୍ୟ ଏହି ମତର ପୃଷ୍ଠପୋଷକ ଭାବରେ ମତ ଦେଇ କହିଅଛନ୍ତି ଯେ—

"ସମାଲୋଚକ ଲେଖକ-ଜୀବନୀ ସହିତ ପରିଚିତ ନହେଲେ ସମାଲୋଚନା ସରସ ହେବା ପରିବର୍ତ୍ତେ କିମ୍ଭୂତ କିମାକାର ରୂପ ଧରିଥାଏ ।"

ଅତଏବ ପ୍ରମାଣିତ ହୁଏ ଯେ ଚିରନ୍ତନ ଭାବଧାରାର ଶ୍ରେଷ୍ଠ କଳାର କୃଷ୍ଟି ବା ସୃଷ୍ଟି । ଅରବିନ୍ଦଙ୍କ ଭାଷାରେ କହିବାକୁ ଗଲେ—"The first and lowest use of art is purely aesthetic, the second is the intellectual or educational, the third and highest is the spiritual." ଅର୍ଥାତ୍ ଆଧ୍ୟାତ୍ମିକ ଭାବସମ୍ପନ୍ନ କଳା ବା ସାହିତ୍ୟ ସର୍ବାପେକ୍ଷା ଶ୍ରେଷ୍ଠ ଓ ଉତ୍କୃଷ୍ଟ ।

ସେହି କଳା-କୃଷ୍ଟିର ମୁଖ୍ୟ ପୁରୋଧା ଥିଲେ ଗୋପବନ୍ଧୁ । ସେ ଯେଉଁ କର୍ମପ୍ରଣାଳୀ ପ୍ରସ୍ତୁତ କରିଥିଲେ ତାହା 'ବିଦ୍ୟା କର୍ମାର୍ଥଂ ଯଦି ନାସ୍ତି ଗୃହକର୍' କିମ୍ବା 'ଋଣଂ କୃତ୍ୱା ଘୃତଂ ପିବେତ୍' ମନ୍ତ୍ରର ସମର୍ଥକ ନୁହେ କିମ୍ବା ସ୍ୱାର୍ଥ, ସଂକୀର୍ଣ୍ଣତା ଓ ଦ୍ୱେଷ ବିଦ୍ୱେଷର ପରିଣତି ନୁହେ । ତାହା ଏକ ମହାନ୍ ଉଜ୍ଜ୍ୱଳ ଆଦର୍ଶର ଅଭିବ୍ୟକ୍ତି । ସ୍ୱାର୍ଥତ୍ୟାଗ, ଆତ୍ମତ୍ୟାଗ, ବିଶ୍ୱପ୍ରୀତି, ସମଭାବାପନ୍ନତା ପ୍ରଭୃତି ସତ୍‌ପ୍ରବୃତ୍ତିଚୟର ପୃଷ୍ଠପୋଷକ ହିସାବରେ ସେ ଋଷିଭାବାପନ୍ନ ହୋଇ ଅମୃତ ଜୀବନର ସନ୍ଧାନ ଲଭି ଅଛନ୍ତି । କାରଣ ଯେଉଁ ଚିତ୍‌ଶକ୍ତିର ଆଲୋଚନା କରି ଯୋଗୀ ମହର୍ଷିମାନେ ଜଗତକୁ ଦିବ୍ୟାଲୋକରେ ଉଦ୍ଭାସିତ କରି ଅଛନ୍ତି କିମ୍ବା ପ୍ରକୃତିର ବିଭିନ୍ନ ସୌନ୍ଦର୍ଯ୍ୟ ମଧ୍ୟରେ କବିମାନେ ଚିତ୍‌ଶକ୍ତିକୁ ବେଶ୍ ଉପଭୋଗ କରି ସତ୍ୟ, ଶିବ, ସୁନ୍ଦରର ଗୁଣ କୀର୍ତ୍ତି ଗାଇଅଛନ୍ତି, ସେହି ଚିନ୍ମୟ ଶକ୍ତିର ସନ୍ଧିକୁ ଭୁଲି ଗୋପବନ୍ଧୁ ମୃଗନାଭି ମୃଗବତ୍ ପାଗଳାମି କରି ନାହାନ୍ତି । "The Universality in action

**is the law of divine living"** ବା "ବିଶ୍ୱଜନୀନ ଭାବ ହିଁ ଭଗବତ୍ ଜୀବନର ବିଧି" ଅନୁସୃତ କରି ବିଶ୍ୱଭାବରେ ଉନ୍ମତ୍ତ ହୋଇ ଅଛନ୍ତି—ଯେହେତୁ ସେ ସଂସାରର ଯାବତୀୟ ବୈଷୟିକ ଚିନ୍ତାକୁ ଦୂରୀଭୂତ କରିଥିଲେ । ଲୋଭ, ମାୟା, ଛନ୍ଦ, କପଟ ପ୍ରଭୃତି ନୀଚ ପ୍ରବୃତ୍ତିଠାରୁ ସେ ଥିଲେ ବହୁତ ଦୂରରେ—ଯେଉଁଠି କି ଉକ୍ତ ନୀଚ ପ୍ରବୃତ୍ତିସମୂହ ପ୍ରବେଶ କରିବା ଏକବାରକେ ଅସମ୍ଭବ । କାରଣ ବୈଷୟିକ ଚିନ୍ତା ପରିହୃତ ପରିସର ଏକ ଦିବ୍ୟ ଚେତନା ଉଦ୍ଭବ କରେ । ତେଣୁ କୁହାଯାଏ—ବୈଷୟିକ ଅନ୍ଧକାର ଦୂରୀକରଣ ହିଁ ଆଧ୍ୟାତ୍ମିକ ଅନ୍ଧକାର ଦୂରୀକରଣ ।

କାହିଁକି ନା, ବିଷୟ ଜଞ୍ଜାଳ ଭିତରେ ମାନବର ଯେଉଁ ସୂକ୍ଷ୍ମ ପ୍ରବୃତ୍ତି ଦିବ୍ୟ-ଜୀବନ ପାଇଁ ଅହରହ ତୃଷିତ—ସେହି ତୃଷା ତା'ର ମେଣ୍ଟେ ନାହିଁ । କାରଣ ଦୃଶ୍ୟମାନ ଜଗତର ବିଷୟା-ସକ୍ତିରେ ମାନବର ବୁଦ୍ଧି ଭ୍ରଷ୍ଟ ହୁଏ । ନିର୍ଲିପ୍ତ କର୍ମ ଯୋଜନାରେ ତା'ର ମନର ଶୃଙ୍ଖଳା ରହେ ନାହିଁ । ତେଣୁ ଗୀତାରେ କୁହାଯାଏ—

"ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ
ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ॥
କ୍ରୋଧାଦ୍ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ
ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ॥"

ତେଣୁ ଗୋପବନ୍ଧୁ ଏହି ମହାତତ୍ତ୍ୱର ତତ୍ତ୍ୱାବଧାନରେ ଯେପରି ନିଜେ ଓ ବିଶ୍ୱମାନବ ସମାଜ ଉଦ୍ଧାର ହେବେ ସେହି ପନ୍ଥା ସୃଷ୍ଟି କରିଥିଲେ । କାରଣ ପ୍ରଜ୍ଞାଲୋକରେ ସେ ସାରା ମାନବ ସମାଜକୁ ନିଜ ଅନ୍ତର ଭିତରେ ଦେଖିବା ସଙ୍ଗେ ସଙ୍ଗେ ସମସ୍ତ ମାନବାନୁଭୂତିକୁ ଅନ୍ତର ଭିତରେ

ଉପଲବ୍ଧି କରି ପାରିଥିଲେ ମଧ୍ୟ । ଯେହେତୁ କି ସେବା ଓ ତ୍ୟାଗର ଉଜ୍ଜ୍ୱଳମୟ ଗରିମା ସେ ରକ୍ଷା କରିଥିଲେ । ତାହା ଯେତେ ଅର୍ଦ୍ଧଶାୟୀ ତେତେ ବିସ୍ମୟକର ମଧ୍ୟ । ଉଦାହରଣ ସ୍ୱରୂପ—ରୋଗଶଯ୍ୟାରେ ପ୍ରାଣପ୍ରତିମ ପୁତ୍ର ଶାୟିତ । ପ୍ରତି ମୁହୂର୍ତ୍ତ ବିପଦଜନକ । କିଏ ଜାଣେ ଏ ଘଡ଼ି କି ଆଉ ଘଡ଼ି ପ୍ରଚଣ୍ଡ ଘୂର୍ଣ୍ଣି ପ୍ରଭଞ୍ଜନ ରୋଗ-ତାଡ଼ିତ-ପ୍ରାଣ-ନୌକା ଅନନ୍ତ ଅଗାଧ ମୃତ୍ୟୁ-ଜଳାବ୍ଧିରେ ସମାଧିପ୍ରାପ୍ତ ହେବ ! ବନ୍ଧୁ ବାନ୍ଧବ, ସାହି ପଡ଼ିଶା ସମସ୍ତେ ଅକାଳ ଦୁଃଖରେ ନିମଗ୍ନ । ବିଷାଦର ଛାୟା ସମସ୍ତଙ୍କ ହୃଦୟରେ ଅଙ୍କିତ । ଏପରି ସମୟରେ ଖବର ଆସିଲା—ଭୀଷଣ ବନ୍ୟାର କରାଳ କବଳରେ କୋଟି କୋଟି ଆବାଳବୃଦ୍ଧବନିତା ଉତ୍ପୀଡ଼ିତ, ମୃତବତ୍ । କେଉଁ ବାପ ମା ଶରୀର ଧରି ଭାବୀ ବଂଶର ଏକମାତ୍ର ପ୍ରତୀକ ହୃଦୟପ୍ରତିମା ପୁଅକୁ ସେପରି ଘଡ଼ିସନ୍ଧି ବେଳେ ବିଭୁଙ୍କ ଚରଣାବ୍ଜରେ ସମର୍ପି ଲସରପସର ହୋଇ ସେହି ଧାରାପାତ ଅନ୍ଧାର ରାତିରେ ଧାଇଁଯିବ 'ଏକ ପୁଏ ଦାୟୀ, କି କୋଟି ପୁଅ ଝିଅରେ ଦାୟୀ' କହି ସେହିଠାକୁ—ଯେଉଁଠାରୁ ଆସିଥିଲା ତାଙ୍କ ହୃଦୟ-କାନନ-ପାରିଜାତ ସନ୍ତାନ ସନ୍ତତିଙ୍କର ବିକଳ ଆର୍ତ୍ତନାଦର ମର୍ମନ୍ତୁଦ ଆହ୍ୱାନ ।

କି ତ୍ୟାଗ ! କି ଆଦର୍ଶ ! ଏହା କିଣ କମ୍ ଆତ୍ମାର ବିକାଶ ! ଏହା କିଣ କମ୍ ସାଧନାର ପରିଣତି ! ସେବା ଓ ତ୍ୟାଗର ସତେ କି ଅତ୍ୟୁଜ୍ଜ୍ୱଳ ଗରିମା !

ପୁଣି ଦେଶବାସୀଙ୍କ ପ୍ରତି ଅନ୍ତରର ଯେଉଁ ଭକ୍ତି ତାହା ଏଇଠି ବେଶ୍ ସୁସମ୍ପାଦିତ । ପୁଣି ସୋଭିୟତ୍ କବିଙ୍କ ଉକ୍ତିର ଯଥାର୍ଥତା ଏଇଠି ମଧ୍ୟ ପ୍ରତିପାଦିତ—

**Wherever pain is—there am I. On every single tear that is shed, I myself am crucified.—(*Maya Kovsky*).**

ଆହୁରି ମଧ୍ୟ ଏକ ଦୃଷ୍ଟାନ୍ତ ଦେଲେ ଧୃଷ୍ଟତା ହେବ ନାହିଁ । କ୍ଷୁଧାର ଅତିଶଯ୍ୟ ପ୍ରକୋପ ଅସମ୍ଭାଳ । ଦିନସାରା ଦରିଦ୍ରନାରାୟଣ ସେବା ନିମିତ୍ତ ବୁଲି ବୁଲି ଶରୀର ମଧ୍ୟ ଅବସନ୍ନ । କିମିତି ଗଣ୍ଡେ ଉଦରସାତ୍ କରିବାକୁ ଗୋପବନ୍ଧୁ ବ୍ୟଗ୍ର । ହଠାତ୍ ପହଞ୍ଚିଲେ—ହା' ଅନ୍ନ, ହା' ଅନ୍ନ ଭଜନ ଗାଇ ନର-କଙ୍କାଳ-ନାରାୟଣ ଉଦୁଉଦିଆ ଖରାରେ ଜୁଡ଼ୁବୁଡ଼ୁ ହୋଇ । ଉଡ଼ ଦେବେ ଅବା କିମିତି, ସେ ନିଜେ ଯେତେବେଳେ ତାର ପୂଜକ—ସେ କି ତାଙ୍କର ସର୍ବ-ଆଶା-ସାଫଲ୍ୟର ଅବତାର ପୁଣି ଗତି, ମୁକ୍ତି-ଦାତା ! ଅବିଳମ୍ବେ ନିଜର ଭୋଜନ ଦ୍ରବ୍ୟତକ ପ୍ରଫୁଲ୍ଲଚିତ୍ତରେ ବାଢ଼ିଦେଇ ଯଥାବିଧି ପୂଜା ସେବା କଲେ । ଅଥଚ ସେ ତୃପ୍ତି ଲାଭ ନ କରି କାନ୍ଦି ଉଠିଥିଲେ ନିଜ ଆରାଧ୍ୟ ଦେବତାର ଅସ୍ଥି ଚର୍ମ-ସାର ବିକଳାଙ୍ଗ ଜୀବନ୍ତ ଦେହକୁ ଦେଖି ଏବଂ କାଳେ କିଏ ତାଙ୍କ ଦେବତାର ହୀନାବସ୍ଥାକୁ ଦେଖି ଛି' ଛି'କାର କରି ଗାଳିମାଡ଼ ଦେଇ-ପାରେ ବୋଲି ଅନୁତପ୍ତ ହୋଇ । ଧନ୍ୟ ଆଦର୍ଶ ! ଧନ୍ୟ ଜୀବନର ସାଧନା ! କେଉଁ ନଶ୍ୱର ଦେହଧାରୀ ମାନବ ପକ୍ଷେ ଏହା ସମ୍ଭବ ! ଏହା କଣ ମରପୁରୀ କ୍ରୀଡ଼ନକ ମାନବର ମହାନୁଭବତା ନୁହେ କି ? ମରି ଆତ୍ମାର ଅମରତ୍ୱ ପ୍ରୟାସ ନୁହେ କି ? ଆଜିକା ଦୁନିଆରେ ଯେଉଁ **'live and let live'** ଆଓ୍ୱାଜ୍ ଗଗନ ପବନ କମ୍ପାଇ ଦେଉଛି, ସେଥିପ୍ରତି ଏହା ଗୋଟିଏ ଆହ୍ୱାନ ବା **challenge** ନୁହେ କି ? ତେଣୁ ଭାରତୀୟ ସଂସ୍କୃତି ଯେପରି 'ନିଜ ସ୍ୱାର୍ଥ ପାଇଁ ଜାତି ନୁହେ ହିନ୍ଦୁ' ପରାକାଷ୍ଠା ଦେଖାଇଅଛି, ତାହା କଣ ଅନ୍ୟତ୍ର

ସମ୍ଭବ ! କାରଣ ସେ ଜାଣିଛ୍ଛ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ ନିଜର ସମାଧି ଉପରେ ବିଶ୍ୱ-ପ୍ରାଣ-ପ୍ରାଚୁର୍ଯ୍ୟ ବିଭବ ହେଉଛି ଦିବ୍ୟ ଆଧାରର ପରିପୂରକ । ସେଥିଯୋଗୁଁ ବାର ବରଷର ଟୋକା 'ଧର୍ମପଦ' ମୁଖରେ ଗାଇ ଉଠିଛି—

"ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ' ନିତ୍ୟ ବିଧି
ଏକର ଯା' କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।"

ଏହି ମହାନ୍ ଭାବ ଯେଉଁ ବ୍ୟକ୍ତିର ହୃଦ-ସରରେ ଅମଳ-କମଳ ସୁଷମା ସୃଷ୍ଟି କରିଛି, ସେ ବ୍ୟକ୍ତି ଯେ ନିଶ୍ଚୟ ଜଣେ ଉଚ୍ଚ ନୈତିକ ଗୁଣର ସ୍ରଷ୍ଟା, ତିଳେହେଲେ ସନ୍ଦେହ ନାହିଁ । ଗୋପବନ୍ଧୁ ଯେତେବେ ଯେ ଚରିତ୍ରଦେବୀଙ୍କର ବରପୁତ୍ର, କେହିହେଲେ ଅସ୍ୱୀକାର କରିବେ ନାହିଁ । କାରଣ ଗୋପବନ୍ଧୁ ଉତ୍ତମ ଭାବେ ହୃଦ୍‌ବୋଧ କରି ପାରିଥିଲେ ଯେ ଚରିତ୍ର ହିଁ ଜୀବନ ତଥା ଦେଶୀୟ ସଭ୍ୟତା ଓ ସଂସ୍କୃତିର ପରିମାପକ । ତେଣୁ ସେ 'ପିତୃ-ତର୍ପଣ' କବିତାରେ ନିଜ ବ୍ୟକ୍ତିଗତ ଜୀବନର ରୂପ ଦେଇ କହି ଅଛନ୍ତି—

"ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇଁ,
ଅନ୍ତରୁଁ ଉତ୍ତର ଆସେ ନାହିଁ, ନାହିଁ, ନାହିଁ ।

ନୁହେ ନରହନ୍ତା କିବା ପରଧନ ହାରୀ,
ପରଶି ନାହିଁ ଏ ତନୁ କେବେ ପରନାରୀ ।

ଜ୍ଞାତସାରେ ଦେଇ ନାହିଁ ପରପ୍ରାଣେ ପୀଡ଼ା,
ଅପରାଧେ ଅନ୍ୟ ପାଶେ ହୋଇନାହିଁ ଛୁଡ଼ା ।

କରି ନାହିଁ ପରନିନ୍ଦା ଈର୍ଷା ସହକାରେ,
ଅପରାଧେ କଳୁଷିତ କେବେ କି ପ୍ରକାରେ ।"

ଗୋପବନ୍ଧୁଙ୍କର ଏହି ଯେଉଁ ବଳିଷ୍ଠ ମତ ପ୍ରକାଶ ତାହା ଯେ ନୈଷ୍ଠିକ ସାଧନାର ପରିଣତି ଏବଂ ସତ୍ ସ୍ୱଭାବ ଓ ଚରିତ୍ରର ସୁପ୍ରକାଶ, ନିଃସନ୍ଦେହ । ନଚେତ୍ ସେ ଅନ୍ତର୍ଦୃଷ୍ଟିରେ ବିଭୁସତ୍ତା ଉପଲବ୍ଧି କରି ଗାଇ ପାରି ନଥାନ୍ତେ—

"ଦୂର ଦେବାଳୟେ ଯିବା ନୁହେ ପ୍ରୟୋଜନ,
ନିଜ ଅଭ୍ୟନ୍ତରେ ଦେଖି ଫେଡ଼ିଣ ନୟନ ।
ହୃଦ-କପିଳାସେ ତୋର ବହେ ପ୍ରେମଝର,
ବିଜେ କରିଛନ୍ତି ତହିଁ ସ୍ୱୟଂଭୂ ଶଙ୍କର ।"

ଏହି ମହନୀୟ ଓ ସ୍ୱର୍ଗୀୟ ଗୁଣାବଳୀରେ ଭୂଷିତ ହୋଇ-ଥିଲେ ହେଁ ଫଳନ୍ତ ବୃକ୍ଷ ସଦାସର୍ବଦା ନମ୍ର ବତ୍ ସେ ଆଚରଣ କରୁଥିଲେ । ବାସ୍ତବତାର କଳୁଷମୟ ପ୍ରଭାବରେ କାଳେ ଏହି କଷ୍ଟାର୍ଜିତ ଗୁଣରାଜିକ ସମ୍ପତ୍ତି ଲୁଣ୍ଠିତ ହୋଇଯାଇ ପାରେ ଏହି ସନ୍ଦେହରେ ବାଗ୍‌ଦେବୀଙ୍କ ପୟରବଜରେ ଗଦ୍‌ଗଦ କଣ୍ଠରେ ଆକୁଳ ମିନତି କରି ଗୁହାରି କରି ଅଛନ୍ତି—

"ଆବର୍ଜନାମୟ ଏହି ସଂସାର ଜଞ୍ଜାଳେ
କେବେ ପ୍ରପୀଡ଼ିତ ମୋର ନ ହେଉ ମାନସ
× × ×
ମୁଁ ଅତି ସାମାନ୍ୟ ମୋର ସାମାନ୍ୟ କାମନା
ପୂରୁ ମାତଃ ବାକ୍ୟଦେବୀ ତୋହରି ପ୍ରସାଦେ
ବାସ୍ତବ ବିଶ୍ୱର ଯେତେ ନୀରସ ଘଟନା
ପ୍ରବେଶ ନ କରୁ କେବେ ମୋ' ସୁଖ-ପ୍ରାସାଦେ ।"

ଆହା ! ସତେ ପ୍ରାଣର କି ସୁନ୍ଦର ଆକୁଳ-ମିନତି-ଭରା ମଧୁର ରାଗିଣୀ ! ଅଶାନ୍ତିପୂର୍ଣ୍ଣତା ପାଶରେ ଇନ୍ଦ୍ରିୟ ବଶୀଭୂତ ପ୍ରାଣର କି ସୁନ୍ଦର ଆନୁଗତ୍ୟ ଧ୍ୱନି !!! ସତେ ଯିମିତି ଅନ୍ୟ ପ୍ରାଣରେ ତାର ପ୍ରତିଧ୍ୱନି ଗୁଞ୍ଜରିତ ହୋଇଉଠି ସେହି ପଥକୁ ଟାଣିନଏ ।

ବାସ୍ତବିକ ଉତ୍କଳ ତଥା ସମୂହ ମାନବ ଜାତି ଲାଗି ଗୋପବନ୍ଧୁ ଯେଉଁ ଅଲୌକିକ ତ୍ୟାଗ, ଅଦ୍ୱିତୀୟ ଆତ୍ମବଳ ପ୍ରଭୃତି ମହତ୍ ଗୁଣସମୂହ ଯିମିତି ଗ୍ରହଣ କରି ଅଛନ୍ତି ଏପରି ପବିତ୍ରମୟ ଚରିତ୍ର ବିନା ତାହା କିଣି ସମ୍ଭବ ହୋଇଥାନ୍ତା ?

ଏହି ମୃତ୍ୟୁ ଆଲୋଡ଼ିତ ବିଶ୍ୱରେ ଅମୃତତ୍ତ୍ୱ ସ୍ପନ୍ଦନ ଉପଭୋଗ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ତାହା ସମ୍ଭବଯୋଗ୍ୟ ହୋଇଥାଏ ଏହି ଐହିକ ଜଗତର ବିଚିତ୍ର-ବେଶ-ସୁଷମାରେ । କାରଣ ଅମୃତର ପ୍ରେରଣା ନେଇ ଜୀବ ସୃଷ୍ଟି ହୋଇଥାଏ । କିନ୍ତୁ ବାହ୍ୟ ଦୁନିଆର ବାହୁଲ୍ୟରୂପ ଝଲକ ତାର ଆଦିମ ପ୍ରବୃତ୍ତିକୁ ଏପରି ଭାବେ ଚପେଇଦିଏ ଯଦ୍ଦ୍ୱାରା କି ଅମୃତ-ଭୋଗୀ ମାନବ ନିଜର ପ୍ରକୃତ ସଂଜ୍ଞା ପ୍ରତି ସମ୍ପୂର୍ଣ୍ଣରୂପେ ଅନ୍ଧ ହୋଇ ସେହି ଅମରତ୍ୱର ମହାନ୍ ପ୍ରତିଭାକୁ ଭୁଲିଯାଏ ଏବଂ କପୋଳକଳ୍ପିତ ବୋଲି ଅଟ୍ଟହାସ୍ୟ କରେ । ହେଲେ ସୁଦ୍ଧା ଅମରତ୍ୱର ପ୍ରତିଭା ତାହା ହୃଦୟରେ ଉନ୍ମେଷିତ, ସଦାସର୍ବଦା ଜାଗରିତ । ତେଣୁ ଗେଟେ କହିଅଛନ୍ତି—"**Life is the childhood of our immortality**" ଅର୍ଥାତ୍ ଜୀବନ ହିଁ ଅମରତ୍ୱର ବାଲକୋଚିତ ମତି ।

ଅତଏବ ସେହି ବାଲୋଚିତ ଚପଳମତି ଅମରତ୍ୱକୁ ନିମ୍ନବିକାଶ ପଥରେ ପରିପକ୍ୱ କରିବା ଉଚିତ । ଭକ୍ତି ଓ

ଭଗବାନଙ୍କ ମଧ୍ୟରେ ଯେଉଁ ବ୍ୟବଧାନ ବିଦ୍ୟମାନ ତାହା ଦୂର କରି ନର ମାନବ ଘୋଷଣା କରିବା ଉଚିତ ଯେ ସେ ଅମର, ସେ ଅବିନଶ୍ୱର ।

ସେଥିଯୋଗୁଁ ତ୍ୟାଗ, ସାଧନା, ସହିଷ୍ଣୁତା, କ୍ଷମା ପ୍ରଭୃତି ମାନବୋଚିତ ଧର୍ମ ପାଳନ କରିବା ବିଧେୟ । ତୃଣଠାରୁ ନମ୍ର, ବୃକ୍ଷପରି ସର୍ବସହିଷ୍ଣୁ ହୋଇ ଏବଂ ସମସ୍ତ ଅହଙ୍କାର ଦୂର କରି ନିଜକୁ ଗୋଷ୍ଠୀରେ ଓ ଗୋଷ୍ଠୀକୁ ନିଜର କର୍ମପ୍ରଣାଳୀ ମାଧ୍ୟମରେ ଫୁଟାଇବା ଉଚିତ । "ଶଫଗ୍ନି ଫର୍ଫରାୟତେ" ଭୁଲି ନିଜର ତୁଚ୍ଛ ବଡ଼ିମାକୁ ଧୂଳିସାତ୍ କରିବା ଉଚିତ । ତା'ହେଲେ ଯାଇ ନମ୍ରଭାବ ପରି ଏକ ସଦ୍‌ଗୁଣ ହୃଦୟରେ ଜାଗି ଉଠି ଆତ୍ମ-ନିବେଦନ ପ୍ରତି ଇଙ୍ଗିତ ଦେବ, ମହିମାମୟ ବିଶ୍ୱନିୟନ୍ତାଙ୍କ ନାମ-କୀର୍ତ୍ତନରେ ସଦାସର୍ବଦା ମୋହିତ କରାଇବ । ସେଇଠି ନର ଆତ୍ମା ବଡ଼ିମା କରି କହିପାରିବ ନାହିଁ ଯେ—**Man is the builder of his fortune**. ସେଇଠି ସେ ଗାଇ ଉଠିବ—

"ଆମାର ମାଥା ନତ କରେ ଦାଓ ହେ ତୋମାର
ଚରନ୍ ଧୂଲିର ତଲେ
ସକଲ ଅହଂକାର ହେ ଆମାର
ଡୁବାଓ ଚୋଖେର ଜଲେ ।"
(ରବୀନ୍ଦ୍ର)

ଏହି ଭାବ ରବୀନ୍ଦ୍ରଙ୍କ 'ବିଶ୍ୱ-କବି'ର ବଡ଼ିମା ନୁହେ । ଯେପରି ନମ୍ରତା ଓ ଅହଂକାର ଦୂରୀକରଣାର୍ଥେ ପ୍ରାଣର ଆକୁଳ ମିନତି, ସେପରି ଗୋପବନ୍ଧୁଙ୍କ "ଉତ୍କଳମଣି" ପଦବୀ ବାସ୍ତବରେ ନୀରସ ଘଟନା ଚକ୍ରାଙ୍କ 'ଆବର୍ଜନାମୟ ଏହି ସଂସାର ଜଞ୍ଜାଳେ' ପ୍ରପୀଡ଼ିତ ନ ହେବା ନିମନ୍ତେ ବାକ୍ୟଦେବୀଙ୍କର ପଦ-କମଳ

ତଳେ ଆତ୍ମ-ସମର୍ପଣ ତଥା ନାମ-କୀର୍ତ୍ତନ । ଯେହେତୁ କି ସେ ଶ୍ରବଣ କରିବାରେ କ୍ଷମ ହୋଇଛନ୍ତି—ବିଶ୍ୱ-ସଙ୍ଗୀତ ଲହରୀର ମଧୁର ମୂର୍ଚ୍ଛନା ।

ପାରିପାର୍ଶ୍ୱିକାବସ୍ଥାର ଘୃଣ୍ୟ ବର୍ତ୍ତମା, ଲୋଭ, ମୋହ, ମିଥ୍ୟା ଓ ଆବର୍ଜନା ସମୂହ ତାଙ୍କର ଜୀବନକୁ ଅତ୍ୟଧିକ ବ୍ୟତିବ୍ୟସ୍ତ କରି ସମାଜରୁ ବହିଷ୍କୃତ କରିଥିଲେ ସୁଦ୍ଧା ସେଥିପ୍ରତି ସେ ଭ୍ରୂକ୍ଷେପ ନକରି ନିଜ ସାଧନାରେ ଅଟଳ ଓ ଅଚଳ ରହି ଯେଉଁ ଦାମ୍ଭିକତା, ନିର୍ଭୀକତା ଏବଂ ନୈଷ୍ଠିକତାର ପରିଚୟ ଦେଇ ଅଛନ୍ତି, ତାହା ଅତୀବ ବିସ୍ମୟକର—ଯଦ୍ଦ୍ୱାରା କି ସେ ଆଜ କେଉଁ ହେଲେ ବ୍ୟକ୍ତି-ବିଶେଷ କିବା ଆତ୍ମୀୟଗଣଙ୍କର କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ଆବଦ୍ଧ ନ ହୋଇ, ହୋଇ ପାରିଛନ୍ତି କୋଟି କୋଟି ଜନତାର ହୃଦୟ ଦେବତା ।

କାରଣ ଆତ୍ମ-ପ୍ରତ୍ୟୟ ହେଉଛି ସାଫଲ୍ୟର ଆବାହକ କିମ୍ବା **"Self confidence is the door of success."** ତାହା ଯେତେ ଦୂର ହୃଦୟରେ ସୁଦୃଢ଼ୀଭୂତ ହୁଏ କର୍ମର ସଫଳତା ତେତେ ପରିମାଣରେ ବର୍ଦ୍ଧିଷ୍ଣୁ ହୋଇଥାଏ ପୁଣି ବିଶ୍ୱ-ପ୍ରତ୍ୟୟର ନିଦର୍ଶନ ଏହି ଆତ୍ମ-ପ୍ରତ୍ୟୟ ଭିତରେ ଉପଲବ୍ଧୋଗ୍ୟ ହୋଇଥାଏ । କାରଣ ଆତ୍ମପ୍ରତ୍ୟୟରେ ହିଁ ବିଶ୍ୱର ପ୍ରକୃତ ବା ବାସ୍ତବ ତଥ୍ୟ ଉଦ୍‌ଘାଟିତ ହୁଏ । ସେହିହେତୁ ଇଂରେଜ କବି ବ୍ଲେକ ନିଜର ଆତ୍ମପ୍ରତ୍ୟୟରୁ ପ୍ରକାଶ କରି ଅଛନ୍ତି—

**"Great things are done**
**When men and mountain meet**
**But this is not done**
**By scurring in the street."**

ଏହି ସବୁ ପର୍ଯ୍ୟାଲୋଚନା କଲେ ହୃଦ୍‌ବୋଧ ହୁଏ ଯେ ଗୋପବନ୍ଧୁଙ୍କ ଭାବ ଓ ଭାଷା ବହୁବିଧ ଅଳଙ୍କାରର ସାହାଯ୍ୟପ୍ରାର୍ଥୀ ନ ହୋଇ ଯେପରି ସରଳ, ତରଳ ଓ ପ୍ରାଣମତାଣିଆ ଉପାଦାନରେ ଅପରୂପ ସୁଷମା ସୃଷ୍ଟି କରିଛି, ସେପରି ରସ-ମାଧୁର୍ଯ୍ୟ ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀର ଦିବ୍ୟ ମିଳନାତ୍ମକ ରୂପ ପ୍ରକଟିତ କରିଛି । ଅନୁଭୂତିର ସ୍ପନ୍ଦନରେ ଭାବାନୁରୂପୀ ଭାଷାର ଏହି ଯେଉଁ ନିରଳସ ପ୍ରୟୋଗ ତାହା ବାସ୍ତବିକ ଅପୂର୍ବ କଳା-ନୈପୁଣ୍ୟ ଏବଂ କମନୀୟତାର ପରିଚୟ ଦିଏ । ହୃଦୟର ଦୁରନ୍ତ ଓ ଦୁର୍ବାର ଅନୁଭୂତ୍ୟାବେଗକୁ ଅନାୟାସେ ହୃଦୟସ୍ପର୍ଶୀ କରିବା ନିମିତ୍ତ କବିତାର ଯାହା ସୌଷ୍ଠବତା ଓ ଗୁରୁତା ପ୍ରକାଶିତ ହୁଏ, ସେହି ସେହି ଉପମା, ଅଳଙ୍କାର ଓ ମଧୁର ଧ୍ୱନି ବ୍ୟଞ୍ଜନରେ ଭାଷାକୁ ରୂପମୟୀ ଓ ମାଧୁର୍ଯ୍ୟମୟୀ କରି ପାଠକ ପ୍ରାଣରେ ଏକ ଅଭିନବ ପ୍ରେରଣା ଓ ଉତ୍ସାହ ଜାତ କରାଇ ଅଛନ୍ତି । ଏହି ସୃଜନ ଶକ୍ତି ହିଁ ଗୋପବନ୍ଧୁଙ୍କର କବି ପ୍ରାଣକୁ ଆଲୋଡ଼ିତ କରିଥିଲା । ତାହା ହିଁ ଶ୍ରେଷ୍ଠ କବିତ୍ୱର ନିଦର୍ଶନ ।

**ପ୍ରକୃତି ଚିତ୍ରଣ:**—କବି ଗୋପବନ୍ଧୁଙ୍କ ଲେଖନୀ ଯିମିତି ସାମାଜିକ ଜୀବନର ଜ୍ୱଳନ୍ତ ପ୍ରତିଛବି, ଜାତୀୟତାର ଚରମ ବିକାଶ ନିମିତ୍ତ ପ୍ରତିମୟ ତ୍ୟାଗ ଓ ସାଧନା, ଭାଷା ଓ ଭାବ ସଂଶ୍ଳିଷ୍ଟରେ ମଞ୍ଜୁ-ପାଠବତା କିଅବା ଏକ ଅଭିନବ ଶୈଳୀ-ମାଧୁର୍ଯ୍ୟରେ ଗଳ୍ପ-ସାହିତ୍ୟର ଉତ୍କର୍ଷତା ପ୍ରତିପାଦିତ କରି ଓଡ଼ିଆ ସାରସ୍ୱତ-କ୍ଷେତ୍ରରେ ଯେ କେବଳ ଯୁଗାନ୍ତର ସୃଷ୍ଟି କରିଛି ତା'ନୁହେ—ସୁଶାନ୍ତ ଓ ଗୁରୁ କଳା ସମ୍ଭାର ବିମଣ୍ଡିତା ଅନନ୍ତ ପ୍ରକୃତିର ନିବିଡ଼ ସଂପର୍କରେ ଆସି ଜନ ସମ୍ମୁଖରେ ତାକୁ ଚର୍ଚ୍ଚିତ କରି ମହାନ୍ କରି ଦେଇଛି । ତାରି ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ କବିତ୍ୱ ଗରିମା ଫୁଟି ଉଠିଛି ।

ନିଭୃତ ଅନ୍ତରର ଅନ୍ତରାଳରୁ ଯେଉଁ ଭାବଧାରା ଛୁଟି ଆସେ—ମୃଦୁ ମନ୍ଦ ମନ୍ଦ ଛନ୍ଦରେ କବିର ନିଃସ୍ପନ୍ଦ ହୃଦୟକୁ ଗୁଞ୍ଜରିତ କରି, ସେଇଠି ପ୍ରକୃତିର ଅନନ୍ତ ସୁଷମା ତରଙ୍ଗାୟିତ ହୁଏ, କବିକୁ ପ୍ରେରଣା ଦିଏ କବିତା-ଉତ୍ସରେ ଭାସି ଯାଇ ବିଶ୍ୱ-କର୍ଣ୍ଣ-କୁହରରେ ଅମିୟ-ନିନାଦ ଶୁଣାଇବାକୁ । କାରଣ ପ୍ରକୃତି ଯେହେତୁ କବିର ଉପାସ୍ୟ ଦେବୀ କିମ୍ବା କବିତ୍ୱର ଜନୟିତ୍ରୀ । ଅବଶ୍ୟ ସାଧାରଣଙ୍କ ଜୀବନରେ ପ୍ରକୃତିର ପ୍ରଭାବ ଅନୁଭୂତ ହେଉଥିଲେ ସୁଦ୍ଧା କବି ସେହି ପ୍ରଭାବର ନିବିଡ଼ ସଂସ୍ପର୍ଶରେ ଆସି ତାର କବିତ୍ୱ କିମ୍ବା ଭାବ ସମ୍ପଦକୁ ଉତ୍ତରୋତ୍ତର ଉନ୍ନତ କରିଥାଏ । ସୁଷମାୟିତ ପ୍ରକୃତିବଶରୁ ଯେଉଁ ସ୍ପନ୍ଦନ କବିର ହୃଦୟରେ ମୃଦୁ ଗୁଞ୍ଜନ ଗାଇଥାଏ ସେଥିରେ ବିଭୋର ହୋଇ କବି ତାର କବିତା-ଝରଣାକୁ ଭାଷା-ମାଧୁର୍ଯ୍ୟରେ ରୂପାୟିତ କରି ଜନମନ ଆହ୍ଲାଦିତ କରେ । ସେଥିଯୋଗୁଁ କବିର କବିତ୍ୱକୁ ସମାଲୋଚନା କରିବା ପୂର୍ବରୁ ଆଜିକାର ଆଧୁନିକ ଦୃଷ୍ଟି ପ୍ରଥମେ ଅନ୍ୱେଷଣ କରେ ପ୍ରକୃତିର ଲୋଭନୀୟ ମୂର୍ତ୍ତି-ମହିମା କେତେଦୂର ଭାବ-ସମ୍ପଦ ସହି ମିଳିତ ହୋଇ ମଣିକାଞ୍ଚନର ସଂଯୋଗ ସ୍ଥାପନ କରିପାରିଅଛି । କାରଣ ସାମାଜିକ ଆବେଷ୍ଟନୀରେ ରାଜନୀତିକର ବିକାଶ ଯେପରି ସମ୍ଭବ, ପ୍ରକୃତିର ଦିବ୍ୟ ସୌନ୍ଦର୍ଯ୍ୟ ମଧ୍ୟରେ କବିତ୍ୱର ପ୍ରକାଶ ମଧ୍ୟ ସେପରି ।

ଏହି ଦୃଷ୍ଟିରୁ ଗୋପବନ୍ଧୁ-ସାହିତ୍ୟ ସମାଲୋଚିତ ହେଲେ କହିପାରିବା ନାହିଁ ଯେ ପ୍ରକୃତି ପ୍ରଭାବରୁ ଗୋପବନ୍ଧୁ ଚିର-ବଞ୍ଚିତ । କାରଣ ଉତ୍କଳର ଅବସ୍ଥିତି ଏପରି ଏକ ମାଧୁର୍ଯ୍ୟଭରା ଯେ ତାର ଚତୁଃପାର୍ଶ୍ୱରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଉଚ୍ଛଳ ଲହରୀ ଅହରହ ନୃତ୍ୟରତ । 'ମରାଳ ମାଳିନୀ ନୀଳାମ୍ବୁ ଚିଲିକା'ର ଅବକାଶ

ରଞ୍ଜିତ ସୌନ୍ଦର୍ଯ୍ୟ, ମଞ୍ଜୁଳ-ମଞ୍ଜୁଷା-ରଜତ ମହେନ୍ଦ୍ରର ଅପୂର୍ବ ମନୋହାରିତା, ଅନନ୍ତ ଓ ଉଦାର ମହୋଦଧିର କମନୀୟ ସୁଷମା ପ୍ରଭୃତି, ନଦୀ ଗିରି କାନନ ବେଷ୍ଟିତ ଗୁରୁ-ସମ୍ଭାର ଯେପରି ଲାସ୍ୟମୟୀ ପ୍ରକୃତିର ଶ୍ୟାମଳିମାରେ ମାଧୁର୍ଯ୍ୟମୟ ହୋଇ ଉଠିଅଛି ସେଇଠି ଧ୍ୱିମାଭୂମିଁ ପରି ଅଶିକ୍ଷିତ ବ୍ୟକ୍ତି ମଧ୍ୟ ଯେ କବି—ଆଶ୍ଚର୍ଯ୍ୟ ନୁହେ । କାରଣ କବିତ୍ୱର ଐଶ୍ୱରିକ ଉପାଦାନ ଉତ୍କଳରେ ଏପରି ଅଦ୍ୱିତୀୟ ଯେ ନିଭୃତ ଅନ୍ତରକୁ ସ୍ପର୍ଶ କରି କଳ୍ପନା ଜାଗ୍ରତ କରେ, ମୂକକୁ ମୁଖରିତ କରେ ଓ ଚକ୍ଷୁହୀନ ପ୍ରାଣରେ ଆଣେ କବିତ୍ୱର ସୁଧା ନିସ୍ୟନ୍ଦୀ ମୂର୍ଚ୍ଛନା । ଶାରଳା ଦାସଙ୍କ ମହାଭାରତରେ ପ୍ରକୃତି ସୁଷମା ଯେପରି ଚିତ୍ରିତ ହୋଇଛି, ଭଞ୍ଜଯୁଗ ତଥା ଆଧୁନିକ ଯୁଗର ଲେଖଣୀକୁ ମଧ୍ୟ ଉଲ୍ଲାସମୟୀ ପ୍ରକୃତି ଯୋଗାଇଛି ଉପଯୁକ୍ତ କବିତ୍ୱ ଉପାଦାନ—ଯାହାକି କବିତାକୁ କରିଅଛି ଚିର ସୁନ୍ଦର ଓ ମନୋହର ।

Shelly ତେଣୁ ଏହି ପ୍ରସଙ୍ଗରେ କହି ଅଛନ୍ତି ଯେ—

**"I love not the man less but nature more."**

ଅବଶ୍ୟ ଗୋପବନ୍ଧୁ Shellyଙ୍କ ମତାବଲମ୍ବୀ ନହେଲେ ହେଁ ପ୍ରକୃତିର ଯେ ଜଣେ ନୈଷ୍ଠିକ ସାଧକ ଏହା ଯେ କେହି ସ୍ୱୀକାର କରିବାକୁ ବାଧ୍ୟ । କାରଣ ନିୟତିର ନିର୍ଦ୍ଦୟ ଶାସନରେ ତାଙ୍କର ହୃଦୟ ଯେତେବେଳେ ହା' ହତାଶମୟ ହୋଇଉଠେ ସେତିକି ବେଳେ ସେ ପ୍ରକୃତିର ଶାନ୍ତିମୟ କୋଳରେ ଆଶ୍ରୟ ନେଇ ଏକ ନୂତନ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥାନ୍ତି । ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟମୟ ଭାଷା ମାଧ୍ୟମରେ ପ୍ରକୃତିର ଅବିକଳ ରୂପରେଖ ପ୍ରଦାନରେ ଗୋପବନ୍ଧୁ ଯେପରି ଜଣେ ଧୁରନ୍ଧର କଳାବିତ୍, ବହିଃପ୍ରକୃତିର ଏକ ପ୍ରାଞ୍ଜଳ ଚିତ୍ର ଅଙ୍କନରେ ସେପରି ମଧ୍ୟ ଉଲ୍ଲସିତ । ବିରହ ଓ

ମିଳନ, ହାସ ଓ ଅଶ୍ରୁ, ରୁକ୍ଷ ଓ କୋମଳ, କଟୁ ଓ ମଧୁର ପ୍ରଭୃତି ରସାନୁଭୂତି ପ୍ରସଙ୍ଗରେ ପ୍ରକୃତି ଅତ୍ୟନ୍ତ ତତ୍ପର ହୋଇ କବି ପ୍ରାଣରେ ଆଣିଛି ସାନ୍ତ୍ୱନାର ଆମୋଦ ଅନୁଭୂତି, ପ୍ରେରଣା ଦେଇଛି କବିତ୍ୱର ପ୍ରକାଶରେ—ଯେପରି ଅନୁମିତ ହୁଏ ପ୍ରକୃତିର ପ୍ରଭୂତ ପ୍ରଭାବରେ କବି ହୋଇଛନ୍ତି ଗତିଶୀଳ ଓ ଚେତନଶୀଳ ।

ହାଜାରିବାଗ୍ ଜେଲର ନିର୍ମମ ଲୌହାନ୍ଧକାର ପ୍ରକୋଷ୍ଠ ଭିତରେ ଆବଦ୍ଧ ଥାଇ ସୁଦ୍ଧା ରାଜବନ୍ଦୀ ହୃଦୟରେ 'ଗୋଧୂଳି ଲଗ୍ନ'ର ଅଲୌକିକ ମାଧୁରୀ, ଭାର୍ଗବୀତୀରର ସାୟଂକାଳୀନ ଚିତ୍ରର ମାଦକତା ଓ କମନୀୟତା ପ୍ରଭୃତି ସତେ ଯେପରି କବି ଓ ପ୍ରକୃତି ମଧ୍ୟରେ ଏକ ମଧୁମୟ ଭାବ ଜାତ କରିଅଛି—ସେପରି ପ୍ରକୃତିର ଦିଗନ୍ତବିସ୍ତାରୀ ମନୋହର ରୂପ ମାଧୁରୀ କବିପ୍ରାଣକୁ ମଣ୍ଡିଆଲ୍ କରି ଦୁର୍ଲ୍ଲଭ ଆନନ୍ଦ ଦାନରେ ସନ୍ତାପିତ ପ୍ରାଣକୁ ରସାପ୍ଳୁତ କରିଅଛି ।

ଯୌବନର ପ୍ରେମ-ମଧୁ ଆସ୍ୱାଦନ ସମୟରେ କବି ହୃଦୟ ପ୍ରିୟତମା ପତ୍ନୀଙ୍କ 'ସ୍ୱର୍ଗୀୟ ସ୍ନେହ ସାନ୍ତ୍ୱନା' ସୁଖରୁ ବଞ୍ଚିତ ହୋଇଥିବାରୁ ମଧୁର ବସନ୍ତ କାଳର ପରିସମାପ୍ତି ପରେ ଗ୍ରୀଷ୍ମ-ରବି-ରଶ୍ମି ପ୍ରଖରତା ଯେପରି ନିଦାରୁଣ ଓ ଉତ୍ତପ୍ତ—ତନ୍ମଧ୍ୟରେ ନିଜର ବିଚ୍ଛେଦ ଜନିତ ବିଷାଦମୟ ଚିତ୍ରକୁ ପ୍ରକୃତିଠାରେ ଉପଭୋଗ କରିପାରି ଗାଇଅଛନ୍ତି—

"ଆହା ! ପ୍ରିୟଜନ ବିରହ କି ଦାରୁଣ କଷଣ
ପ୍ରୀତି ପାଶେ ବନ୍ଧା ଜଗତ ସର୍ବେ ଜଡ଼ ଚେତନ ।"

ପୁଣି ପ୍ରାକୃତିକ ସୌନ୍ଦର୍ଯ୍ୟ-ବିଭବ ଉପଭୋଗରେ ଆତୁରତା ପ୍ରକାଶ କରି କାରା ସିପାହୀ ପାଖରେ ବିନୀତ ଅନୁରୋଧ ଜଣାଇ କହିଅଛନ୍ତି—

"ସମ୍ଭାଳ ଟିକଏ ସିପାହି ଗୃହ ନ ଦିଅ ଦ୍ୱାରେ
ପ୍ରଣୟ-ବିଭବ ଦେଖିବ କ୍ଷଣେ ରହି ବାହାରେ ।
× × ×
ବିଶ୍ୱ ପ୍ରକୃତିରେ ଦେଖିଲେ ସମ ହୃଦ ବେଦନା
ତାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।
ରହ ଆଉ ଦଣ୍ଡେ ସିପାହି କମ୍ପା କର କଠାଳ
କକ୍ଷେ ଅବରୋଧ ସମୟ ପରି ଗୋଧୂଳି କାଳ ।
ଦେଖ ରତ ରତ ହୁଅଇ ରବି ଏବେ ଗଗନେ
ଆଉ ଟିକଏ ମୁଁ ବୁଲିବ ଏଥି କାରା ପ୍ରାଙ୍ଗଣେ ।"

ଏହି ଉପରୋକ୍ତ ଉକ୍ତିରେ ପ୍ରକୃତି ମାନବ ହୃଦୟ ସହିତ ସମଭାବାପନ୍ନ ହୋଇଅଛି । ବାସ୍ତବତାର ନିଷ୍ଠୁର କଷାଘାତ ଜର୍ଜରିତ ପ୍ରାଣକୁ ଶାନ୍ତିମୟୀ ପ୍ରକୃତିର ସ୍ନିଗ୍ଧ ରୂପ ଶାନ୍ତିବାର୍ତ୍ତା ଶୁଣାଇ ମୁଗ୍ଧ କରିଅଛି ଏବଂ ସାଂସାରିକ ଦୁଃଖ ତାପରେ ଆଣିଅଛି ସାନ୍ତ୍ୱନାର ମଧୁର ପରଶ । ପ୍ରକୃତିର ବହୁବିଧ ରୂପ କେତେବେଳେ କବି ଭାବର କାରୁଣ୍ୟକୁ ପ୍ରକାଶ କରୁଛି ତ ଆଉ କେତେବେଳେ ନିଦାରୁଣ ଦୁଃଖ ଯନ୍ତ୍ରଣା ମଧ୍ୟରେ ଆଣି ଦେଉଛି ସାନ୍ତ୍ୱନାର ଉଲ୍ଲାସ । ଯେପରି କି ମନେ ହୁଏ ସାରା ମାନବ ସମାଜ ପ୍ରକୃତିର ଇଙ୍ଗିତରେ ଚାଳିତ ଓ ନିୟନ୍ତ୍ରିତ । ଏହି ଭାବରାଶି ସୃଷ୍ଟି କରି ଇଂରେଜ କବି ଓ୍ୱାର୍ଡସ୍‌ଓ୍ୱାର୍ଥ ତାଙ୍କ Tintrn କବିତାରେ ଲେଖିଅଛନ୍ତି—

"Well pleased to recognise
In nature and the language of the sense
The anchor of my purest
thought, the nurse,
The guide, the guardian of my
heart and
Soul of all my moral being."

ପ୍ରକୃତିର ଏହି ଯାବତୀୟ ବର୍ଣ୍ଣନା ଭିତରେ ଗୋପବନ୍ଧୁ ଜୀବନୀଶକ୍ତିର ସ୍ପନ୍ଦନ ପାଇଅଛନ୍ତି ଏବଂ ପ୍ରକୃତିର ପ୍ରତ୍ୟେକ ରୂପ ଯେପରି ସଦାସର୍ବଦା ବାସ୍ତବାଭିମୁଖୀ ହୋଇ କବିଙ୍କୁ ପ୍ରେରଣା ଦେଇଅଛି । ତେଣୁ ତାଙ୍କର ପ୍ରତ୍ୟେକ କବିତା ଏହି ବାସ୍ତବତାର ପୃଷ୍ଠପୋଷକ କହିଲେ ଅତ୍ୟୁକ୍ତି ହେବ ନାହିଁ । "ବନ୍ଦୀର ସ୍ୱଦେଶ ଚିନ୍ତା" କବିତାରେ ପ୍ରକୃତି ସୁଷମାସ୍ଫିତ ପଲ୍ଲୀର ବାସ୍ତବ ଗରିମା ଅତ୍ୟନ୍ତ ରମଣୀୟ ଓ ହୃଦ୍ୟ ହୋଇଥିବା ବେଳେ ଶୋଭାମୟୀ ଭାର୍ଗବୀ ତୀରଠାରୁ ପଲ୍ଲୀ ସୀମନ୍ତିନୀ କାଖ-ଚୁମ୍ବିତ ଭରି-କଳସର କଳକଳ ଧ୍ୱନି, ଗାଈଆଳ ପିଲାଙ୍କ ବଂଶୀର ମଧୁର ସ୍ୱର-ଲହରୀ, ଭାଇ ସହି ଭଉଣୀର ଶାଶୂଘର ଗମନ, ହଳଫେରନ୍ତା ଭୋଇର ସୁମଧୁର ହଳିଆ ଗୀତ, ବେପାରୀଦଳଙ୍କ ଭଞ୍ଜୀୟ ଚୌପଦୀ ଆଲୋଚନା, ଯାଗେଶ୍ୱରୀଙ୍କଠାରେ ଧାପ ଦେଇ ପ୍ରତ୍ୟାଗମନ। ଚଲାପାଙ୍ଗୀଙ୍କ ବର୍ଣ୍ଣନା ଗୁଡ଼ିକ ଯେପରି ଅତିଶୟ ମାଧୁର୍ଯ୍ୟମୟ ଓ ରସାଳ ହୋଇ ଉଠିଅଛି, ସେପରି ବାସ୍ତବତାର ନିଖୁଣ ଚିତ୍ର ମଧ୍ୟ ପରିବେଷଣ କରିଅଛି । ଉଦାହରଣ ସ୍ୱରୂପ—

"କେତେ ଆଡ଼ୁ ଉଡ଼ି ଆସନ୍ତି ବାଦୁଡ଼ି
ଝୁଲନ୍ତି ପୁନାଙ୍ଗ-ଫଳିତ ଶାଖେ
ନଦୀ ତଟେ ତଟେ ପାଦପ ପ୍ରକଂପେ
ଚଲାପାଙ୍ଗୀ ଗୁହେଁ ଚମକ ପାଖେ ।
କାହିଁ ନଦୀ ଜଳେ ମିଳି ଟୋକାଦଳେ
ଗୋଳନ୍ତି ଗୋବର ଦେଖାନ୍ତି ହୁଲା
ମାଛ ଧରିବାର କରନ୍ତି ବିଚାର
ଦେଇ କାନଖିଅ ବାଳଧୁମୁରା ।
ନବ ଯଉବନୀ କାଖେ ପିଲା ଘେନି
ଗୁଲି ନ ପାରଇ ଜଘନ ଭରେ

ତା' ଗୃହିଁ ଚପଳ ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।"

ପୁଣି—

"ଅରୁଣ-ଆରକ୍ତ ବରଣେ ରଞ୍ଜିତ
ଦିଶେ ପୂରୁବ ଆକାଶ
ଫିଟି ନାହିଁ ନିଶା · ଅଙ୍ଗୁ କଳା ଶାଢ଼ୀ
ଫିଟି ନାହିଁ ଉଷାହାସ ।
ଚନ୍ଦ୍ରଭାଗା ନୀରେ ପାହାନ୍ତ ସମୀରେ
ଖେଳଇ ମୃଦୁ ତରଙ୍ଗ
ଅଦୂର କାନନେ ପହର ପ୍ରମାଣେ
ରାବେ କୁମ୍ଭାଟୁଆ ଖଗ ।

× × ×

ରୌଦ୍ରରେ ବିସ୍ତୃତ ସାଗର ସୈକତ
ନିସ୍ତବ୍ଧ ବିଜନ ବେଳା
ସମ୍ମୁଖେ ଅପାର ନୀଳ ପାରାବାର
ଚିରନ୍ତନ ଊର୍ମି ଖେଳା ।
ଊର୍ଦ୍ଧ୍ୱେ ସୁଶୋଭିତ ତାରକା-ଖଚିତ
ଅନନ୍ତ ନୀଳ ଆକାଶ
ହେଲା ଶୁଦ୍ଧ ପ୍ରାଣ ଅପୂର୍ବ ଉଦାର
ମହାଭାବ ପରକାଶ ।

ଉପରୋକ୍ତ ପଂକ୍ତିଗୁଡ଼ିକରେ କାବ୍ୟିକ ସତ୍ତା ଯେପରି ଭାବେ ନିହିତ ହୋଇଅଛି ପାଠକ ପ୍ରାଣ-ପ୍ରାଚୁର୍ଯ୍ୟ ଉପଭୋଗ କରି ରସବିଭୋର ହୋଇଛି ମଧ୍ୟ ।

ପୁଣି କାଳିଦାସ ଯେପରି ପ୍ରଣୟିନୀ କୁଶଳ ସମାଚାର ଶ୍ରବଣେଚ୍ଛୁ ବିରହୀ ଯକ୍ଷ ହୃଦୟରେ ଆକୁଳତା ସୃଷ୍ଟି କରି ଜୀମୂତକୁ ବାର୍ତ୍ତାବହ କରିଥିଲେ, ସେପରି ଓଡ଼ିଆ ସାହିତ୍ୟର କାଳିଦାସ ଗୋପବନ୍ଧୁ ଉତ୍କଳର ସାଗର ସରିତ, ପାହାଡ଼ ଗାଡ଼ିଆ ସମେତ ବନ, ଦୁର୍ଗ ଓ ସ୍ରୋତସ୍ୱିନୀ ପ୍ରଭୃତିଙ୍କର କୁଶଳ ସମାଚାର ବସନ୍ତର ମଧୁ ସଞ୍ଚାରର ପରଶରେ ଶୁଣିବାକୁ ଉତ୍କଣ୍ଠା ପ୍ରକାଶ କରି ଅଛନ୍ତି । ଦକ୍ଷିଣାଶା ବଧୂର ମଧୁ-ଗୁଞ୍ଜନରେ ଗୁଞ୍ଜରିତ ହୋଇ ଯେତେବେଳେ ବସନ୍ତ ବାତ ଧୀରି ଧୀରି ପଦକ୍ଷେପରେ ବହିଆସେ ଉତ୍କଳର ଦକ୍ଷିଣସୀମା ଅତିକ୍ରମ କରି—ସେତେବେଳେ କବି-ପ୍ରାଣ ତନ୍ମୟ ହୋଇ ପଚାରୁଅଛି—

ମୋର ପ୍ରିୟସ୍ଥଳୀ କେତେ ନଉଜ୍ଜ୍ୱଳ
କରିଥିବେ ତବ ଆସିବା ବାଟେ
ଦେଇଥିବେ ପରି କେତେ କି ବାରତା
ଶୁଣାଅ ମନ ମୋ ଅଛି ଉଚାଟେ ।
କରିଥିବ ଭେଟ ମଞ୍ଜୁଷା-ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ ନାଚିଥିବ ପ୍ରେମେ
ଦୋହଲାଇ ତରୁ ଭୁଜସଂକୁଳ ।
ରସନା, ନୟନ, ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ-ମଣ୍ଡନ ସୁରମ୍ୟ 'ଉଦ୍ୟାନ'
ଦେଇଥିବ କେତେ କି ଉପହାର !
ଆମ୍ବ ରମ୍ଭା ବେଲ ଲେମ୍ବୁ ନାରିକେଳ
ପଣସ ସପୁରି ଖଜୁରି ତାଳ,

ବଧିରଷା ପାଇଁ ଆସିଥିବ ଛୁଇଁ
'ଉଦ୍ୟାନ'ର ନାନା ଫଳ ରସାଳ ।
କୃଶୋଦରୀ ଋଷି- କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ !
ଶବରବାସୀଙ୍କର ରାଗିଣୀ ମଧୁର
ଶୁଣିଥିବ ଚମ୍ପୂ ଲଳିତ ଗାନ ।

ତତ୍‌ପରେ "ଉତ୍କଳ କମଳା ନୀଳାମ୍ବୁ ଚିଲିକା" ଜଳରାଶି ଉପରେ ମୃଦୁଗତି ଛନ୍ଦରେ ଭାସି ଆସି ଯେଉଁ ମନୋମୁଗ୍‌ଧକର ସୁଷମା ସୃଜନ କରିଥିବ ସେହି ଉପଲକ୍ଷେ କହିଅଛନ୍ତି—

"ଆଲିଙ୍ଗନ ଆଶେ ତବ ପଥ ପାଶେ
ଚିଲିକା ଆବେଗେ ଥିବ ଅନାଇଁ
ମୁକ୍ତ ନୀଳକେଶୀ ଶ୍ୟାମ ଶୋଭାରାଶି
ଗିରି ଶିଖୀ ସ୍ଫୀତ ବକ୍ଷ ମେଲାଇ ।
ଚଞ୍ଚଳ ହିଲ୍ଲୋଳେ ଚାରୁ ଗଣ୍ଡସ୍ଥଳେ
ଚୁମ୍ବିଥିବ ଯେବେ ଗାଢ଼ ସମୀର
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସେ କମ୍ପାଇ ନୀର ।"

ଆହୁରି ସମ୍ବଲପୁରୀ ଯୋଷାଗଣଙ୍କୁ ଲକ୍ଷ୍ୟ କରି କହିଅଛନ୍ତି—

"ଚମ୍ପକ ବରଣୀ ଚାରୁ ସୁହାସିନୀ
ଯହିଁ ଗୁଣବନ୍ତୀ ପୁର ଅଙ୍ଗନା
ସ୍ୱଦେଶ ବସନେ ସ୍ୱଦେଶୀ ଭୂଷଣେ
ଦିଶେ ସଦା ତୋର ପ୍ରୀତ ପ୍ରସନ୍ନା ।"

ପୁଣି ସଙ୍ଗୀତପ୍ରବୀଣା ଉତ୍କଳର ସଙ୍ଗୀତ ମାଧୁର୍ଯ୍ୟ ଅଶିକ୍ଷିତା ସାନ୍ତାଲ-ରମଣୀ ମୁଖରୁ ଶୁଣି କବିତାରେ ରୂପାୟିତ କରି କହିଅଛନ୍ତି—

"ସାନ୍ତାଲ ସୁନ୍ଦରୀ ସଙ୍ଗୀତ ଲହରୀ
ଖେଳି ଯାଉଥିବ ପ୍ରବାହେ ତବ
ବନବାସୀ ପ୍ରିୟ ସ୍ୱଚ୍ଛ ମଧୁମୟ
ଆଘ୍ରାଣ କଲି କି ପୁଷ୍ପ ଆସବ ।"

ତତ୍‌ପରେ, ଗୋଧୂଳି କାଳର ଅପୂର୍ବ ମାଧୁର୍ଯ୍ୟରେ ବିମୁଗ୍‌ଧ ହୋଇ ରାଜବନ୍ଦୀ ଗୋପବନ୍ଧୁଙ୍କ ହୃଦୟ କହି ଉଠୁଅଛି—

"ଦେଖ ରକ୍ତ ରକ୍ତ ହୁଅଇ ରବି ଏବେ ଗଗନେ
ଆଉ ଟିକିଏ ମୁଁ ବୁଲିବି ଏଥି କାରା ପ୍ରାଙ୍ଗଣେ ।"

ଏହି ଉକ୍ତିରେ ଗୋଧୂଳି ସୌନ୍ଦର୍ଯ୍ୟ ଯେତେ ଉପଭୋଗ କଲେ ସୁଦ୍ଧା କବି-ପ୍ରାଣରେ ସେଥିପ୍ରତି ବୈରାଗ୍ୟ ଆସୁନାହିଁ । ମୁହୁର୍ମୁହୁ ତାର ଅମିୟାନନ୍ଦ ଲଭିବା ଆଶାରେ ସୌନ୍ଦର୍ଯ୍ୟ-ପିପାସୁ ହୃଦୟ ମତୁଆଲ୍ ହୋଇ ପ୍ରାଣର ଏକାନ୍ତ ଆକାଙ୍‌କ୍ଷାକୁ ପ୍ରକାଶ କରୁଅଛି । କାରଣ କବି ପକ୍ଷେ ଗୋଧୂଳି ସମୟ ଏକ ଶୁଭ ମୁହୂର୍ତ୍ତ । ଦିବସର କର୍ମକ୍ଲାନ୍ତ ଜୀବନ ଯାବତୀୟ ଜଞ୍ଜାଳରୁ ମୁକ୍ତ ହୋଇ ଆମୋଦପ୍ରମୋଦର ପୂର୍ଣ୍ଣ ଅବକାଶ ପାଇଥାଏ । "ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ"ର ଅପରୂପ ସୁଷମାର ମଧୁର ମୂର୍ଚ୍ଛନାରେ ରୂପାୟିତ ହୋଇ କବି ଲେଖନୀକୁ ଭାବ ପ୍ରବାହରେ ପ୍ରଭାବିତ କରିଥାଏ । ତେଣୁ ଗୋଧୂଳି ସମୟ ଦିବସର ପ୍ରତ୍ୟେକ ସମୟ ଅପେକ୍ଷା ଅତ୍ୟନ୍ତ ଶୁଭକର ବୋଲି ଜ୍ୟୋତିଷ ଶାସ୍ତ୍ର ମଧ୍ୟ ସ୍ୱୀକାର କରୁଛି । ଅତଏବ ଦିବସର ଏହି ଅପୂର୍ବ ସୌନ୍ଦର୍ଯ୍ୟ

ବିମଣ୍ଡିତ ଗୋଧୂଳି କବିହୃଦୟକୁ ଶିଳାପ୍ଳିତ ନ କରି ନିସ୍ତାର କରିବ କିପରି ?

ଅତଏବ ମଧୁପର ମୃଦୁ ଗୁଞ୍ଜନ, ବସନ୍ତ ଗନ୍ଧବହର ମଧୁର ଆଲୋଡ଼ନ, ମୁକ୍ତ ମାଳକେଶୀ ଚଲିକାର ଶ୍ୟାମ ଶୋଭାରାଶି ପ୍ରଭୃତି ପ୍ରକୃତିରାଣୀର ଅବୟବରେ ତରଙ୍ଗାୟିତ ହୋଇ କବି ଦୃଷ୍ଟିରେ ଏକ ଚିରନୂତନ ସୌନ୍ଦର୍ଯ୍ୟ ସୃଷ୍ଟି କରିଛି । ତାହା ଯେମନ୍ତ ଏକ ସ୍ୱତନ୍ତ୍ର ଶୈଳୀର ସୂଚନା ଦିଏ । ପୁଣି ପଲ୍ଲୀ ପ୍ରକୃତି ତାଙ୍କର ଲେଖନୀ ମୁନରେ ତତ୍ପର ହୋଇ ଅଜ୍ଞାତ ଓ ଅବହେଳିତ ପଲ୍ଲୀ-ପ୍ରାଣରେ ସୁଧାଧାରା ଖେଳାଇ ଆଶା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ନିଜ ସ୍ୱରୂପକୁ ସଭ୍ୟଜଗତ ସମ୍ମୁଖରେ ରୂପାନ୍ତରିତ କରି ପ୍ରିୟତମ ହୋଇ ପାରିଅଛି ।

ଏତାଦୃଶ ମନୋରମ ବିଭବ କବିପ୍ରାଣର ତାପିତ ହୃଦୟକୁ ସୁଶୀତଳ କରିଛି । ଦୈନ୍ୟ ଦୁଃଖଭରା ଦୁନିଆରେ ଆନନ୍ଦ ମଦିରା ଢାଳି ଲାସ୍ୟମୟୀ ପ୍ରକୃତି ଜଗତର କଲ୍ୟାଣମୟୀ ରୂପେ ପୂଜ୍ୟା ହୋଇଅଛି ।

ଏତଦ୍‌ବ୍ୟତୀତ ସୂକ୍ଷ୍ମାନୁଭୂତିରେ ଉପଲବ୍ଧି କଲେ ଜଣା-ଯାଏ ଯେ ଉପରୋକ୍ତ ଉକ୍ତିଗୁଡ଼ିକରେ ଗୋପବନ୍ଧୁଙ୍କର ସୌନ୍ଦର୍ଯ୍ୟ-ତତ୍ତ୍ୱର ସଙ୍କେତ ପ୍ରଚ୍ଛନ୍ନଭାବେ ତାଙ୍କର ଆନନ୍ଦମୟୀ କବିତା ମାଧ୍ୟମରେ ଫୁଟି ଉଠିଅଛି । ଏହା କବିର ବିଶେଷତ୍ୱ । ଯେହେତୁ ଯୁଗ ଯୁଗ ଧରି ସୌନ୍ଦର୍ଯ୍ୟର ଉପାସକ ହେଉଛି କବି—ଯାହାର ପ୍ରେରଣାରେ କବିତ୍ୱ ତାର ହୃଦୟଗ୍ରାହୀ ହୁଏ ଏବଂ ରସାଳ ହୋଇ ଉଠି ଜାତି ତଥା ଦେଶ ମୁଖ ଉଜ୍ଜ୍ୱଳ କରିଥାଏ । କାରଣ ସୌନ୍ଦର୍ଯ୍ୟର ଅଚିନ୍ତ୍ୟ ଓ ଅପ୍ରତିହତ ପ୍ରେରଣା କବିର ନିଭୃତ

ଅନ୍ତର ପ୍ରଦେଶରେ ପହଞ୍ଚି ଯେଉଁ ମଧୁର ବ୍ୟଞ୍ଜନା ଉଦ୍ଗିରଣ କରେ ସେହି ପନ୍ଥାନୁସରଣରେ କବି ତାର କବିତାକୁ ରୂପାୟିତ କରେ, ପାଠକ ପ୍ରାଣରେ ବୁହାଇଦିଏ ମଧୁମୟ ଉତ୍ସ ।

ହେଲେହେଁ ସେହି ସୌନ୍ଦର୍ଯ୍ୟବୋଧ ଜ୍ଞାନ ସମସ୍ତଙ୍କ ପକ୍ଷେ ସମ୍ଭବଯୋଗ୍ୟ ନୁହେଁ । କାରଣ ସୌନ୍ଦର୍ଯ୍ୟ ଏପରି ଏକ ବସ୍ତୁ ଯାହାକି ଚର୍ମଚକ୍ଷୁରେ ଦେଖି ହେବ ନାହିଁ କିମ୍ବା ଇନ୍ଦ୍ରିୟଦ୍ୱାରା ଉପଭୋଗ ସୁଦ୍ଧା ହୋଇ ପାରିବ ନାହିଁ । ତେଣୁ ଉପନିଷଦରେ ଏହାକୁ 'ଅବାଙ୍ ମନସ୍ ଗୋଚର' ବୋଲି ମତ ବ୍ୟକ୍ତ କରିଅଛନ୍ତି । ଅର୍ଥାତ୍ ଯାହାକି ଭାଷାରେ ବ୍ୟକ୍ତ ହେବ ନାହିଁ କିମ୍ବା ମାନସ ପଟରେ ଚିନ୍ତା ସୁଦ୍ଧା କରି ହେବ ନାହିଁ ଅଥଚ ତାହାର ସ୍ଥିତି ଉପଭୋଗ ହେଉଥିବ ।

ଏପରି ଯେଉଁ ଅଚିନ୍ତ୍ୟ ଓ ଅଭେଦ୍ୟ ଶକ୍ତି ତାହା କେବଳ ଉପଭୋଗ୍ୟ ହୋଇ ପାରିବ ହୃଦୟର ନିଭୃତ କକ୍ଷରେ । ତେଣୁ ଏହାକୁ ବିଦ୍ୱାନ ବ୍ୟକ୍ତିମାନେ ଭଗବତ୍ ଶକ୍ତିର ରୂପାନ୍ତର ବୋଲି ଆଖ୍ୟା ଦେଇଥାନ୍ତି । ଯେହେତୁ ଭଗବାନ୍ ହେଉଛନ୍ତି ସଚ୍ଚିଦାନନ୍ଦ ସ୍ୱରୂପ । ଯାହା ସତ୍ୟ ତାହା ଶିବ, ଯେ ଶିବ ସିଏ ସୁନ୍ଦର । ଏହି ସୁନ୍ଦର ହିଁ ପରମବ୍ରହ୍ମ ଭଗବାନଙ୍କର ପୂର୍ଣ୍ଣତା । ତେଣୁ ସୌନ୍ଦର୍ଯ୍ୟର ପୂଜା ହିଁ ସଚ୍ଚିଦାନନ୍ଦ ଭଗବାନଙ୍କର ପୂଜାର ରୂପାନ୍ତର ମାତ୍ର ।

କିନ୍ତୁ ଏହି ପୂଜା ଭିନ୍ନ ଭିନ୍ନ ମୁନିଙ୍କର ବିଭିନ୍ନ ମତ ହେଲା ପରି କବିମାନଙ୍କର ବିଭିନ୍ନ ଧାରଣାରେ ତାର ବହୁମୁଖିତ୍ୱ ପ୍ରକଟିତ ହେଉଛି । କ୍ଷୁଦ୍ର **Daffodil** ପୁଷ୍ପର ଅନ୍ତର୍ଦ୍ଧାନରେ କବି ହେରିକଙ୍କ ପ୍ରାଣ ବିଷାଦମୟ ହୋଇଥିଲି ବେଳେ ପ୍ରକୃତି ଉପାସକ **Wordsworth** ସେହି ଫୁଲଟି ମଧ୍ୟରେ ଅନନ୍ତ ଜୀବନର ରୂପ

ଦେଖି ପାରିଅଛନ୍ତି, କିମ୍ବା କଳା-ପ୍ରାଚୁର୍ଯ୍ୟରେ କୋଣାର୍କ ଦେଉଳ ପୃଥିବୀର ଅଷ୍ଟମାଶ୍ଚର୍ଯ୍ୟ ବିଷୟ ବୋଲି ଗୌରବମଣ୍ଡିତ ହେଉ ଥିବା ବେଳେ ଆଜିକାର ଅତ୍ୟାଧୁନିକ କବି ମୁଖରେ ତାହା ଏକ ଆଭିଜାତ୍ୟ ଆଡ଼ମ୍ବରର ନିଦର୍ଶନ ବୋଲି ରୂପାନ୍ତରିତ ହେଉଛି । ଏପରି ଅନେକ ଦୃଷ୍ଟାନ୍ତ ଏହି ସମ୍ବନ୍ଧରେ ଦେଇପାରିବା । ତା' ବୋଲି କିନ୍ତୁ ଏହି ମତସମୂହ ହେତୁ କିମ୍ବା ଗୌଣ ନୁହେ । ଶୋଭା-ମାନସୀର ବହୁମୁଖୀ ପ୍ରକାଶ ଓ ବିକାଶ, ଯାହାକି ସୌନ୍ଦର୍ଯ୍ୟର ବିଭିନ୍ନ କଳା-ପ୍ରାଚୁର୍ଯ୍ୟ ସୃଷ୍ଟି କରି ସାହିତ୍ୟକ୍ଷେତ୍ରକୁ ମାଧୁର୍ଯ୍ୟମୟୀ କରିଥାଏ, ରସ ଉତ୍ସ ବୁହାଇଥାଏ ଏବଂ ଶୁଷ୍କ ଜୀବନକୁ ପଲ୍ଲବିତ କରିଥାଏ । ତାହାହିଁ ସୌନ୍ଦର୍ଯ୍ୟର ଗରିମା ଓ ବିଭବ ।

**ଦର୍ଶନ:**—ଦର୍ଶନ ହେଉଛି ଏକ ଅତି ସୂକ୍ଷ୍ମତମ ବିଷୟ, ଯାହାକି ତୀକ୍ଷ୍ଣ ଜ୍ଞାନସମ୍ପନ୍ନ ଭାବ ବିନା ସହଜେ ଉପଲବ୍ଧି ହୋଇପାରେ ନାହିଁ । ସୃଷ୍ଟିରହସ୍ୟ, ବିଭିନ୍ନ ରୂପ ଧାରଣରେ ପ୍ରକୃତିର ବିକାଶ, ଜୀବନର ବିଭିନ୍ନ ପର୍ଯ୍ୟାୟରେ ଅନୁଭୂତିର ଉଲ୍ଲାସ ପ୍ରଭୃତି ସୃଷ୍ଟିର ଯେଉଁ ସୂକ୍ଷ୍ମ ସ୍ତର ଦେଇ ଗତି କରୁଛି ସେଇଠି ରହିଛି ଦର୍ଶନତତ୍ତ୍ୱର ନିଗୂଢ଼ତମ ପ୍ରକାଶ । ତାହା ଯେତେ ସହଜ ବୋଧ ହୁଏ ତହୁଁ ବଳି ଅଧିକ ଅଜ୍ଞେୟ ଓ ଅଚିନ୍ତ୍ୟ ।

ହେଲେହେଁ ଭାରତୀୟ ଆର୍ଯ୍ୟ ସଂସ୍କୃତି ବିଶ୍ୱନିୟନ୍ତାଙ୍କର ଏହି ଅତି ସୂକ୍ଷ୍ମତମ ପ୍ରଦେଶରେ ପ୍ରବେଶି କୃତିତ୍ୱର ପରିଚୟ ଦେଇଛି ! ସୃଷ୍ଟିର ଜ୍ଞାନାନ୍ଧକାରରେ ଅୟମାରମ୍ଭେ ବିମଳ ଦର୍ଶନା-ଲୋକ ଉଜ୍ଜ୍ୱଳାଇ ମାନବିକତାର ମହତ୍ତ୍ୱ ବୃଦ୍ଧି କରିଛି । ମାକ୍ସମୁଲର ଯଥାର୍ଥରେ ଜାତିର, ଆମ୍ଭାକୁ ଚିହ୍ନି ଏହି ଦେଶକୁ 'a nation of philosophers' ବୋଲି ଆଖ୍ୟା ଦେଇଅଛନ୍ତି ।

ବେଦ ବେଦାନ୍ତଠାରୁ ଆରମ୍ଭ କରି ହଳିଆ ଗୀତ ପର୍ଯ୍ୟନ୍ତ ଯଦିଓ ପରୀକ୍ଷା କରୁଁ, ତେବେ ଅନାୟାସେ ଜାଣିପାରିବା ଯେ ପ୍ରତ୍ୟେକ ଗୀତର ଭାବ ସହ ଏହି ଦାର୍ଶନିକ ଚିନ୍ତାଧାରା ଅତି ସୂକ୍ଷ୍ମ ଓ କୋମଳ ଭାବେ ପରିବେଶିତ ହୋଇଅଛି । ଜ୍ଞାନୀ, ବିଦ୍ୱାନ, ପଣ୍ଡିତ ଓ କବିମାନଙ୍କୁ ଛାଡ଼ି ଦେଲେ ମଧ୍ୟ ଅବହେଳିତ ଓ ଘୃଣିତ ପଲ୍ଲୀର ଅଶିକ୍ଷିତା ରମଣୀ ମୁଖରେ ଏହି ଦର୍ଶନତତ୍ତ୍ୱ ବେଶ୍ ଅନୁଭୂତ ହେଉଅଛି ମଧ୍ୟ । ତେଣୁ ବିବେକାନନ୍ଦ ଥରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ପାର୍ଥକ୍ୟ ବୁଝାଇ କହିଥିଲେ ଯେ—"ରାଜନୀତିକ ଚିନ୍ତାଧାରା ଭିତରେ ପାଶ୍ଚାତ୍ୟ ଦେଶ ଯେପରି କୃତିତ୍ୱର ପରିପୂରକ, ଦାର୍ଶନିକ ଭାବଧାରାରେ ଭାରତୀୟ ପ୍ରାଣ ସେପରି ଉତ୍ଫୁଲ୍ଲିତ ।

ଅତଏବ ଭାରତୀୟ ପ୍ରାଣ ଦାର୍ଶନିକ ତତ୍ତ୍ୱର ଅତି ନିକଟତମ, ପୁଣି ଆଦିମ ସ୍ରଷ୍ଟା ଓ ଦ୍ରଷ୍ଟା । ଅବଶ୍ୟ କେତେକ ଚିନ୍ତାଶୀଳ ବ୍ୟକ୍ତି ଦର୍ଶନର ମାତୃଭୂମି ଗ୍ରୀକ୍ ଦେଶ ବୋଲି ବିବେଚିତ କରିଛନ୍ତି । ତାହା ଯେତେଦୂର ଅସମ୍ଭବ ତେତେ ମଧ୍ୟ ମୂର୍ଖତା ବୋଲି ନ କହିଲେ ସୁଦ୍ଧା ସଂକୀର୍ଣ୍ଣ ଦୃଷ୍ଟିକୋଣର ପରିଚୟ ଦେଉଛି । ଏହି ସମ୍ବନ୍ଧରେ ଭାରତୀୟ ମତ ବ୍ୟତୀତ ପାଶ୍ଚାତ୍ୟ ପଣ୍ଡିତ ଓ ଗବେଷକ ଯେଉଁ ମତ ବ୍ୟକ୍ତ କରିଅଛନ୍ତି ତାହା ବିଶେଷ ଉଲ୍ଲେଖଯୋଗ୍ୟ । ଯଥା— "As far as philosophical thought is concerned, we cannot any more allow the history of philosophy to begin with the Greeks because India has a rich literature of philosophical writings in the Upanishads which go back to the 6th century B. C.

and in centain hymns of the Rigveda which go back to 2000 B. C. long before the Greeks had begun to speculate."

କେବଳ ଯେ ଏହି ଗୋଟିଏ ମତ ତା'ନୁହେ । ବିଶ୍ୱର ପ୍ରତ୍ୟେକ ଦେଶର ଜ୍ଞାନୀ, ପଣ୍ଡିତ, ଗବେଷକ, ଐତିହାସିକ ପ୍ରଭୃତି ବିଦ୍ୱାନ୍ ବ୍ୟକ୍ତିମାନେ ଭାରତ ସପକ୍ଷରେ ମତ ପ୍ରକାଶ କରିଅଛନ୍ତି । Victor Cousin କହିଅଛନ୍ତି—" × × × we are constrained to bend the knee before the philosophy of the east and to see this the native land of the highest philosophy."

ଅତଏବ ଗୋପବନ୍ଧୁଙ୍କ ଦାର୍ଶନିକ ଚିନ୍ତାଧାରା ପର୍ଯ୍ୟାଲୋଚନା କଲେ ହୃଦ୍‌ବୋଧ ହୁଏ ଯେ ଭାରତୀୟ କର୍ମପ୍ରଣାଳୀ ପ୍ରତ୍ୟେକ ସ୍ତରରେ ଯେପରି ଦର୍ଶନର ଆଶ୍ରୟ ନେଇଛି, ସେପରି ଗୋପବନ୍ଧୁଙ୍କ ସାହିତ୍ୟ କ୍ଷୀରନୀର ସଦୃଶ ଦର୍ଶନ ଚିନ୍ତା ସହିତ ଓତପ୍ରୋତ ଭାବେ ବିଜଡ଼ିତ ହୋଇଛି । ଜାତୀୟତା, ଭାଷା ଓ ଭାବ, ପ୍ରକୃତି, ଗୃହନିକ ପ୍ରଭୃତି ବର୍ଣ୍ଣନା ମାଧ୍ୟମରେ ନିଗୂଢ଼ ଦାର୍ଶନିକ ଚିନ୍ତା ପରିବେଷିତ ହୋଇଛି—ଯାହା କି ବିଭିନ୍ନ ବିଷୟ ସମାଲୋଚନା ପ୍ରସଙ୍ଗରେ ଏଥିପୂର୍ବେ ଉଲ୍ଲେଖିତ ହୋଇଥିଲେ ମଧ୍ୟ ସେଥିର ସଠିକ୍ ବିବରଣୀ ଏଇଠି ଆବଶ୍ୟକ ମନେ ହୁଏ । ଉଦାହରଣ ସ୍ୱରୂପ—

'ଅନ୍ଧାରେ ନ ହୁଡ଼ି ପଥ ରେ ସରଗ-ଯାତ୍ରୀ'

ଏଇଠି 'ସରଗ-ଯାତ୍ରୀ' ବିଭୂତି ସାଧାରଣ ମାନବ ଦେହରେ ଯାହା ଦେଖି ଅଛନ୍ତି ତାହା ଦର୍ଶନତତ୍ତ୍ୱର ଆଭାସ ଦିଏ । ସଂସାରର ପିଚ୍ଛିଳ ପଥରେ ଯତ୍ନ ସହକାରେ ଯାତ୍ରା କଲେ

ସୁଦ୍ଧା ବାସ୍ତବତାର ନିର୍ଦ୍ଦୟ ପ୍ରକୋପରେ ଧୈର୍ଯ୍ୟଚ୍ୟୁତ ଘଟିବାର ଯଥେଷ୍ଟ ସମ୍ଭାବନା ଥିବା ଯୋଗୁଁ କାଳେ ମାନବର ଅମୃତ ଜୀବନ ଆଦର୍ଶଚ୍ୟୁତ ହୋଇପାରେ ସେଥିପ୍ରତି ସତର୍କ କରି ଦେଇଅଛନ୍ତି ।

କାରଣ ମାନବ ଯେ ଅନନ୍ତ ଆଦ୍ୟଶକ୍ତିର ଏକ ଜୀବନ୍ତ ପ୍ରତିମୂର୍ତ୍ତି ବା ସୃଷ୍ଟିର ସର୍ବଶ୍ରେଷ୍ଠ ସମ୍ପତ୍ତି—ଗୋପବନ୍ଧୁ ଏହା ମର୍ମେ ମର୍ମେ ଅନୁଭବ କରୁଥିଲେ । କାରଣ ଯେଉଁ ପ୍ରଜ୍ଞାଲୋକରେ ମାନବ ଅଭେଦ୍ୟ ସୃଷ୍ଟିରହସ୍ୟ କିମ୍ବା ବିଚିତ୍ରତାକୁ ଭେଦ କରି ବେଶ୍ ଉପଭୋଗ କରେ—ଅନନ୍ତ ରୂପସତ୍ତାକୁ ବାସ୍ତବ ଚିତ୍ରରେ ରୂପାୟିତ କରି ଜୀବନ୍ତ କରେ—ଅଚିନ୍ତ୍ୟ ଓ ଅଜ୍ଞେୟ ବିଷୟବସ୍ତୁକୁ ଚମତ୍କାରଭାବେ ପ୍ରତିଫଳନ କରି ବାସ୍ତବ ଜୀବନ ସହିତ ତାର ଘନିଷ୍ଠ ସମ୍ପର୍କ ଆଣିଦିଏ—ତାହା ହିଁ ମାନବୀୟ ଗୁଣର ଦେବତ୍ୱ ।

ଏହି ସ୍ୱର୍ଗୀୟ ସୌଷ୍ଠବ କମ୍ ସାଧନାର ପରିଣତି ନୁହେଁ । ଅନ୍ତର୍ଦ୍ଦୃଷ୍ଟି ନିକ୍ଷେପରେ ଯେ ଦେଖେ ଗୋଷ୍ଠୀ ଭିତରେ ନିଜକୁ ଓ ନିଜ ଭିତରେ ଗୋଷ୍ଠୀକୁ—ସେହି କେବଳ ହିଁ ସକ୍ଷମ ହୁଏ ଏହି ସ୍ୱର୍ଗୀୟ ସୌଷ୍ଠବ ବା ମଧୁରତା ଉପଭୋଗ କରିବାକୁ ।

ଗୋପବନ୍ଧୁ ସେହି ଆଦର୍ଶର ଶ୍ରେଷ୍ଠ ପୂଜକ ଓ ସେବକ । ସେଥିଯୋଗୁଁ ସେହି ମଧୁରତା ଉପଭୋଗ କରି ଗାଇଅଛନ୍ତି—

"ମଧୁମୟ ଭବେ ମତ୍ତ ହେଉ ବିଶ୍ୱପ୍ରାଣୀ ।
ସର୍ବ ସିନ୍ଧୁ ସ୍ରୋତେ ଝରୁଁ ମଧୁମୟ ନୀର
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।"

କିମ୍ବା

"ମଧୁମୟ ଗନ୍ଧେ ହେଉ ବିଶ୍ୱ ନନ୍ଦିତ ।"

ଏହି ପ୍ରସଙ୍ଗରେ ବିଶ୍ୱ-କବି ରବୀନ୍ଦ୍ର କହିଅଛନ୍ତି—

"ପ୍ରେମେ, ପ୍ରାଣେ, ଗାନେ, ଗନ୍ଧେ, ଆଲୋକେ, ପୁଲକେ
ପ୍ଲାବିତ କରିୟା ନିଖିଲ ଦ୍ୟୁଲୋକେ, ଭୂଲୋକେ
ତୋମାର ଅମଲ ଅମୃତ ପଡ଼ିଛେ ଝରିଆ ।"

କିମ୍ବା

"ସକଲ ଆକାଶ ସକଲ ଧରା
ଆନନ୍ଦେ ହାସିତେ ଭରା ।"

ବିଶ୍ୱ-ସୃଷ୍ଟିର ସୌନ୍ଦର୍ଯ୍ୟତତ୍ତ୍ୱ ଭିତରେ ଯେଉଁ ମଧୁମୟ ପ୍ରବାହ ଅହରହ ପ୍ରବାହିତ ହୋଇ ମୃଦୁ ଗୀତି ଲହରୀରେ ବିଶ୍ୱ-ପ୍ରାଣ ଆମୋଦିତ କରେ, ତାହା ଦୃଶ୍ୟମାନ ଜଗତର ବସ୍ତୁ ନୁହେ କିମ୍ବା ସ୍ପର୍ଶ ଓ ଆଘ୍ରାଣର ସାମଗ୍ରୀ ନୁହେ, ଉତ୍କର୍ଷ ଚିତ୍ତଶକ୍ତିର ଉପଭୋଗ୍ୟ ମାତ୍ର—ଯଦ୍ଦ୍ୱାରା କି ଅନନ୍ତ ବ୍ରହ୍ମଙ୍କର ଯେଉଁ ମଧୁମୟ ସତ୍ତା ବିଶ୍ୱର ଭୂମା ଭୂମା ଭେଦି ଊର୍ମିଳ ଛନ୍ଦରେ ଗତି କରି ଯାଉଛି, ତାକୁ ଉପଲବ୍ଧି କରିହୁଏ, ପ୍ରାଣରେ ଆସେ ପରମ ଶାନ୍ତି ଓ ଆନନ୍ଦ ।

ସେହି ଦୃଷ୍ଟିରେ ଗୋପବନ୍ଧୁ କହିଅଛନ୍ତି—

"ପୂରି ରହିଛନ୍ତି ପ୍ରଭୁ
ସର୍ବ ଭୂତେ ସର୍ବସ୍ଥାନେ
ପାଇବି ପରାଣେ ଶାନ୍ତି
ତାଙ୍କ ପାଦପଦ୍ମ ଧ୍ୟାନେ ।"

ଏହି ପ୍ରସଙ୍ଗରେ ରବୀନ୍ଦ୍ର ଦୁଃଖସୁଖ ଦୁନିଆର ବିଚିତ୍ରଭରା ଜୀବନକୁ ବିଭୁଙ୍କ ପଦପ୍ରାନ୍ତରେ ଶରଣାଗତ କରି ଗାଇଛନ୍ତି—

"ଆମାର ମାଝେ ତୋମାର ଲୀଲା ହବେ
ତାଇ ତୋ ଆମି ଏସେଛି ଏଇ ଭବେ ।
× × ×
ଦୁଃଖ ସୁଖେର ବିଚିତ୍ର ଜୀବନେ
ତୁମି ଛଡ଼ା ଆର କିଛୁ ନା ରବେ ।"

ଏହା ଯଥାର୍ଥ । କାରଣ ସ୍ଥାବର ଜଙ୍ଗମ ପ୍ରଭୃତି ଯେତେ ଯେତେ ପଦାର୍ଥ ଓ ଜୀବ ଏହି ଦୃଶ୍ୟମାନ ଜଗତରେ ପରିଦୃଷ୍ଟ, ସେଥି ଭିତରେ ଭଗବତ୍ ସତ୍ତା ପୂର୍ଣ୍ଣଭାବରେ ବିକଶିତ । ପ୍ରତ୍ୟେକ କ୍ରିୟା ଓ ଭାବନା ତାଙ୍କର ଦ୍ୱାରା ସଂପୂର୍ଣ୍ଣଭାବେ ନିୟନ୍ତ୍ରିତ । ଯେହେତୁ ସେ ଶାସକ ଓ ଆମେ ଶାସିତ । ସେ ଭୋଗୀ ଓ ପ୍ରତ୍ୟେକ ସୃଷ୍ଟ ପଦାର୍ଥ ଓ ଜୀବ ତାଙ୍କର ଭୋଗ୍ୟ । ଅତଏବ ମନୁଷ୍ୟ ପ୍ରଜ୍ଞାଲୋକରେ ଉଦ୍ଭାସିତ ହୋଇ ସେ ଯେତେ ଐଶୀ ଶକ୍ତି-ବିଶିଷ୍ଟ ଓ ସ୍ୱାଧୀନ ହେଉନା କାହିଁକି ପ୍ରକୃତିର ସେ ଦାସ, ଯେହେତୁକି ତ୍ରିତାପ ଯନ୍ତ୍ରଣାରେ ଅହରହ ଦୁଃଖ କଷ୍ଟ ଭୋଗ କରେ, ଜରା, ମୃତ୍ୟୁ, ଅଜ୍ଞାନ ପ୍ରଭୃତି ଦୁଃଖ ଦ୍ୱାରା ନିଷ୍ପେଷିତ ହୁଏ ପୁଣି ସୀମିତ ପରିବେଷ୍ଟନୀ ମଧ୍ୟରେ ବିଚରଣ କରେ । କିନ୍ତୁ ପରମାତ୍ମା ଅନନ୍ତ ଓ ଅସୀମ । ତାଙ୍କର ଗତିଶୀଳତାରେ ପ୍ରତ୍ୟେକ ପଦାର୍ଥ ଗତିଶୀଳ । କାରଣ କର୍ତ୍ତାର ଅଭାବରେ କର୍ମ କେବେ ସମାପନ ହୁଏନି । ଯେଉଁଠି କର୍ତ୍ତାର ଅଭାବ ସେଇଠି କ୍ରିୟାର ମଧ୍ୟ ଅଭାବ ।

ଅତଏବ ସୃଷ୍ଟିର ଭୂମାଭୂମା ଭେଦ ଯେଉଁ ଐଶ୍ୱରିକ ସତ୍ତା ଫୁଟିଉଠୁଛି ତାହା କେବେହେଲେ ମିଥ୍ୟା ନୁହେ । ଅଥଚ ଅଜ୍ଞାନ ତଥା ଅହଙ୍କାର ବଶତଃ ସେହି ଦିବ୍ୟପ୍ରଭାକୁ ଦେଖିପାରୁ ନାହିଁ । କାରଣ ଅଜ୍ଞାନାବୃତ ହେବାଦ୍ୱାରା ମାନବର ମାନସିକ ଦିବ୍ୟ-ଦୃଷ୍ଟି

ଶକ୍ତିରହିତ ହୁଏ । ଈଶ୍ୱର ଓ ଆତ୍ମା ଯେ ଏକ ଏହି ନିତ୍ୟ ସତ୍ୟ ପ୍ରତି ତାର ଆସେ ବିଦ୍ରୋହ । ସେ ହିତାହିତ ଜ୍ଞାନଶୂନ୍ୟ ହୁଏ, ସାଂସାରିକ ଆକର୍ଷଣ ଫଳରେ ନିଜକୁ ବିଶ୍ୱର ଅଧିକାରୀ ଓ ଭୋଗୀ ବୋଲି ବିବେଚନା କରେ— ଯଦ୍ଦ୍ୱାରା କି ପିହିତ ପାଷାଣ ଜୀବନରେ ଯେଉଁ ଭଗବତ୍ ସତ୍ତାର ମଧୁର ଉତ୍ସ ଆନନ୍ଦ ଦାନ କରୁଥିଲା, ଅଶାନ୍ତି ଓ ବିପ୍ଳବରେ ଆଣୁଥିଲା ଶାନ୍ତି ଓ ପ୍ରଗତି, ସେହି ଗୁଣକୁ ହରାଇବସେ । ଏହି ମାୟାବାଦ ଫଳରେ ବାହ୍ୟରୂପକୁ କେବଳ ପ୍ରକୃତ ପଦାର୍ଥ ବୋଲି ଜ୍ଞାନ କରି ଅନ୍ତର ପ୍ରତି ଦୃଷ୍ଟି ଦିଏ ନାହିଁ । ସୃଷ୍ଟିର ଅନ୍ତରାଳରେ ଯେଉଁ ଅଜେୟ ଓ ଅପ୍ରାକୃତିକ ଶକ୍ତି ଅଜର ଅମର ହୋଇ ବିରାଜିତ ସେହି ଚିନ୍ମୟାନନ୍ଦ ମୂର୍ତ୍ତିକୁ ଚିହ୍ନି ପାରେ ନାହିଁ । ଏମନ୍ତ ଭ୍ରାବାପନ୍ନ ବ୍ୟକ୍ତି ପ୍ରତି ଉପନିଷଦକାର କହିଅଛନ୍ତି—

"ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସା ବୃତାଃ,
ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ।"

ଅର୍ଥାତ୍—ଈଶ୍ୱରଠାରୁ ଆତ୍ମାକୁ ପୃଥକ୍ କରି ଅର୍ଥାତ୍ ବୈଷୟିକ ଆକର୍ଷଣରେ ସଦାସର୍ବଦା ଲିପ୍ତ ରହି ଯେ କି ଧରାକୁ ସରା ଜ୍ଞାନ କରେ, ସିଏ ହେଉଛି ସୂର୍ଯ୍ୟାଲୋକବିହୀନ ଘନାନ୍ଧକାରାବୃତ ବ୍ୟକ୍ତି । ଏଇଠି "ଅନ୍ଧେନ ତମସାବୃତାଃ" ବୋଲି ଯାହା କୁହାଯାଇଛି ତାହା କେବଳ ଅଜ୍ଞାନ ଓ ଅବିଦ୍ୟାନ୍ଧକାର (Ego) ବୋଲି ଅର୍ଥ ବୁଝାଏ ଏବଂ ଏହି ଅଜ୍ଞାନବିଶ୍ଳିଷ୍ଟ ମନ ସଦାସର୍ବଦା ଅଭିଳାଷ ରୁଚି (objective desire) ପ୍ରତି ଆସକ୍ତ ହୋଇ ମାନସିକ ତଥା ଶାରୀରିକ କ୍ଳେଶ, ଯନ୍ତ୍ରଣା ପ୍ରଭୃତି ଭୋଗ କରିଥାଏ । ଯେହେତୁ ଅଭିଳାଷ ଓ ଆସକ୍ତି ହେଉଛି ସବୁ ଅନର୍ଥର ମୂଳ କାରଣ । ସେଥିହେତୁ ଭଗବାନ୍ ଶ୍ରୀକୃଷ୍ଣ କହିଅଛନ୍ତି ମୋହି,

ଅଭିଳାଷ ଓ ଆସକ୍ତି ତ୍ୟାଗ କରି ନିଷ୍କାମ ସେବା ହିଁ ମନୁଷ୍ୟର ଶ୍ରେଷ୍ଠତମ ଗୁଣ ଓ ଆଦର୍ଶ ।

ଅତଏବ ଜୀବନ ସହିତ ପରମାତ୍ମାଙ୍କ ଐକ୍ୟଜ୍ଞାନ-ବିଶିଷ୍ଟ ସାଧନା ଓ ଅନାସକ୍ତ ଭାବନା ହିଁ କେବଳ ସ୍ୱର୍ଗୀୟ ଭୋଗର କାରଣ । ତେଣୁ କୁହାଯାଇଛି, ଯଥା—

"ଈଶାବାସ୍ୟ ମିଦଂ ସର୍ବଂ ଯତ୍ କିଂଚଜ୍ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥାଃ ମା ଗୃଧଃ କସ୍ୟଚିଦ୍ ଧନମ୍ ।"

ଗୋପବନ୍ଧୁ ଏହି ନିଗୂଢ଼ ଦାର୍ଶନିକ ତତ୍ତ୍ୱ ଦୃଷ୍ଟିରେ ନିଜର କର୍ମପନ୍ଥା ସ୍ଥିରୀକୃତ କରିଥିଲେ । ପ୍ରାଣୀର ଅଜ୍ଞାନ ଜନିତ ମୋହାନ୍ଧକାର ତଥା ପଶୁତ୍ୱକୁ ସମୂଳେ ବିଲୋପ କରିବା ନିମିତ୍ତ ନିଜ ଅନ୍ତର୍ଦୃଷ୍ଟିରେ ଭଗବତ୍ ଶକ୍ତିର ସାହଚର୍ଯ୍ୟ ନେଇଥିଲେ । ଯେହେତୁ ସେ ଦୃଢ଼ଭାବେ ଜାଣିଥିଲେ ଯେ ଅଜେୟ ଓ ଅନନ୍ତ ଶକ୍ତିର ସାହାଯ୍ୟରେ ଅସମ୍ଭବ ସୁଦ୍ଧା ସମ୍ଭବ ହୋଇପାରେ । ଦୁଃଶାସନ ପ୍ରବୃତ୍ତି କୁତ୍ସିତ କୁକୁର ପରି ପୋଷା ମାନିପାରେ । ତେଣୁ ସେ ଦୃଢ଼ ଆତ୍ମବିଶ୍ୱାସରେ କହିଅଛନ୍ତି—

"ଆଧ୍ୟାତ୍ମିକ ଭାବେ ଲାଗିଛି ଲଢ଼ାଇ
ଭାଙ୍ଗିବାକୁ ପଶୁ ବଳର ବଢ଼ାଇ ।"

ମାନବିକତାର ଏହି ପୂର୍ଣ୍ଣ ଅଭିବ୍ୟକ୍ତିରେ ଭଗବତ୍ ସତ୍ତାକୁ ନିବିଡ଼ଭାବେ ଉପଲବ୍ଧି କରି ଶାନ୍ତି-ସୁଧା ପାନ କରିଅଛନ୍ତି । ଦୁନିଆର ନୀରସ ଘଟନା ମଧ୍ୟରେ ଚିତ୍ଶକ୍ତିର ଅଦ୍ଭୁତ ବିକାଶ ହେତୁ ସୃଷ୍ଟିର ମଧୁରତା ଆସ୍ୱାଦନ କରିଅଛନ୍ତି । ମାନବର ସେବା ହିଁ ଭଗବତ୍ ସେବାର ରୂପାନ୍ତର ମାତ୍ର ବୋଲି ଯେଉଁ ଉକ୍ତି ଅଛି, ତାହାର ସାର୍ଥକତା ଏଇଠି ସମ୍ପୂର୍ଣ୍ଣ ଭାବରେ

ପ୍ରତିପାଦିତ ହୋଇଛି । ଯେହେତୁ ଆଧୁନିକ ମନୀଷୀ କହିଅଛନ୍ତି—
**"It bases its action in the collective life upon an inner experience and inclusion of others in our own being, an inner sense of reality and oneness କିମ୍ବା for the divine in others and divine in all."**

ଏହି ଦାର୍ଶନିକ ଚନ୍ଦ୍ରାଲୋକରେ ଗୋପବନ୍ଧୁଙ୍କର ଅନ୍ୟ ଏକ ଅଭିନବ ସ୍ପନ୍ଦନ ଅନୁଭବ କରୁଁ । ସ୍ନେହ, ବନ୍ଧୁତା ଓ ପ୍ରେମର ଅଲୌକିକ ସ୍ଫୁରଣରେ ଶ୍ରୀକୃଷ୍ଣଙ୍କର ବିରାଟ ଅବତାରରେ ଅର୍ଜ୍ଜୁନ ଯେପରି ବିଶ୍ୱରୂପ ଦର୍ଶନ କରିଥିଲେ ଗୋପବନ୍ଧୁ ସେପରି ଅସାଧାରଣ ଆଦର, ସ୍ନେହ ଓ ପ୍ରେମବଶତଃ ସମଗ୍ର ମାନବ ଜାତିକୁ ନିଜର ଅନ୍ତର ମଧ୍ୟରେ ଦେଖିପାରିଥିଲେ । ତେଣୁ ସେ କହିଅଛନ୍ତି—

"ପ୍ରେମ ଭାବ ଯାର ଅନ୍ତରେ ପୂରିତ
ସର୍ବ ପ୍ରାଣୀ-ହୃଦ ତା' ହୃଦେ ଅଙ୍କିତ
ସର୍ବ ଅନୁଭୂତି ସର୍ବ ଭୂତେ ତାର
ତା' ଦୃଷ୍ଟିରେ ବିଶ୍ୱ ଏକ ପରିବାର ।"

ଏହି ଦିବ୍ୟାନୁଭୂତି ଦୁର୍ବାର କାମନାଯୁକ୍ତ ପ୍ରେରଣା ନୁହେ କିମ୍ବା ସୂଚନା ନୁହେ । ବ୍ରାହ୍ମୀସ୍ଥିତି ବା ବ୍ରହ୍ମ ସମାଧିରେ ମାନସିକ ପ୍ରବୃତ୍ତିର ଅଦ୍ଭୁତ ଓ ଅଲୌକିକ ବିଳାସ । କାରଣ ଆତ୍ମିକ ଅଭିବ୍ୟକ୍ତିରେ ବାସନା, କାମନା, ଲୋଭ, ମୋହ, ଅହଂକାର, ମାତ୍ସର୍ଯ୍ୟ ପ୍ରଭୃତି ଅଜ୍ଞାନ-ଶତ୍ରୁ ସମୂହ ଯେପରି ମାନବୀୟ ଗୁଣକୁ ପଥଭ୍ରଷ୍ଟ କରିବାରେ ଅହର୍ନିଶ ବ୍ୟାପୃତ ସେଇଠି ସାମାନ୍ୟ ମାନବ ନିଜର ଆଦର୍ଶ ରଖିପାରେ ନା । ଖରସ୍ରୋତା ସ୍ରୋତସ୍ୱିନୀ

ପ୍ରବାହରେ ଅଳ୍ପ ନୀରବିଶିଷ୍ଟ ଗାଡ଼ିଆର ଅବସ୍ଥା ଯେପରି, ସେପରି ତାର ଅବସ୍ଥା ହୁଏ । ସେଇଠି ଦରକାର ଅନନ୍ତ ସାଗରର ବୈଶିଷ୍ଟ୍ୟ । ଯେଉଁଠି କି ଯେତେ ବେଗଗାମୀ ନଦୀ ହେଲେ ସୁଦ୍ଧା ସାଗରର ନିଶ୍ଚଳ ଓ ଗମ୍ଭୀର ଆତ୍ମାରେ ଲୀନ ହୁଏ ଓ ତତ୍ ପ୍ରକୃତିକ ଭାବେ ନିଜକୁ ନିୟନ୍ତ୍ରିତ କରେ । ଅର୍ଥାତ୍ ନିଜର ସତ୍ତ୍ୱକୁ ସମ୍ପୂର୍ଣ୍ଣଭାବେ ସମୁଦ୍ରର ଅନନ୍ତ ଅଗାଧ ଓ ଗମ୍ଭୀର ଆତ୍ମା ଭିତରେ ହଜାଇଦିଏ ।

ଅତଏବ ଗୋପବନ୍ଧୁଙ୍କର କର୍ମନିଷ୍ଠ ଆତ୍ମା ଅନନ୍ତ ଓ ଗମ୍ଭୀର ପ୍ରକୃତିକ ହୋଇଥିଲା । 'ପ୍ରେମ କି ଅଟଇ କେବଳ ନୀଚ ସ୍ୱାର୍ଥର ଛଳନା' କିମ୍ବା 'ବାସ୍ତବ ବିଶ୍ୱର ଯେତେ ନୀରସ ଘଟଣା' ସମୂହ ତାଙ୍କର କର୍ମପଥରେ ଯାବତୀୟ ପ୍ରତିବନ୍ଧକ ସୃଷ୍ଟି କରି ଲୁହ ନ କନ୍ଦାଇ ରକ୍ତ କନ୍ଦାଇ ଥିଲେ ସୁଦ୍ଧା 'ଚାଲ ସତ୍ୟପଥେ ନାହିଁ ଡ଼ର ଭୟ' ଗୁରୁ ଗମ୍ଭୀର କଣ୍ଠରେ କହି ପାରୁ ଚାଲିଛି— ଗିରି ଶିଖେ ଲୟ ରଖି । ନିଜର ନୈଷ୍ଠିକ କର୍ମରେ ଆତ୍ମା ନିବେଶ କରି ବିଶ୍ୱକୁ ନିଜ ଭିତରେ ଦେଖିପାରିଛି, ସ୍ୱର୍ଗୀୟ ଶାନ୍ତି ପାଇଁ ଭଗବାନଙ୍କର ଚରଣାବ୍ଜରେ ନିଜକୁ ସମର୍ପି ଦେଇ ଆତ୍ମଜ୍ଞାନ ଓ ଆତ୍ମଲାଭ ପାଇଅଛି ପୁଣି ବିଶ୍ୱ ପ୍ରେମରେ ନିଜକୁ ଭସାଇ ଦେଇଅଛି ।

ଏହି ଯେଉଁ ବିଶ୍ୱଧର୍ମ ଧାରଣା ତାହା ହିଁ ବ୍ରହ୍ମସମାଧିତତ୍ତ୍ୱର ବିକାଶ । କାରଣ ବସ୍ତୁତାନ୍ତ୍ରିକ କିମ୍ବା ବହିର୍ଜଗତର ଲୋଭନୀୟ ଆକର୍ଷଣରେ ବିଚଳିତ ହେଉଥିବା ବୁଦ୍ଧି ଯେତେବେଳେ ବିଶ୍ୱଧର୍ମ ଆଦର୍ଶରେ ନିଶ୍ଚଳ ରହେ ସେତେବେଳେ ମନର ଏକାଗ୍ରତା ଆସେ, ଚିତ୍ତଶକ୍ତିର ବିକାଶ ଘଟେ । ଅର୍ଥାତ୍ ଯୋଗପ୍ରାପ୍ତି ହୁଏ ।

ସେହି ଉପଲକ୍ଷେ ଭଗବାନ ଶ୍ରୀକୃଷ୍ଣ କହିଅଛନ୍ତି—

ଶ୍ରୁତିବିପ୍ରତିପନ୍ନା ତେ
ଯଦା ସ୍ଥାସ୍ୟତି ନିଶ୍ଚଳା
ସମାଧାବଚଳା ବୁଦ୍ଧିଃ
ତଦା ଯୋଗମବାପ୍‌ସ୍ୟସି ।
(୨।୫୩)

ଏହି ଯୋଗ ସିଦ୍ଧାନ୍ତରେ ମନୁଷ୍ୟ ଜ୍ଞାନ କରେ ବ୍ୟକ୍ତିରେ ଗୋଷ୍ଠୀର ବିକାଶ ଯିମିତି, ଗୋଷ୍ଠୀରେ ବ୍ୟକ୍ତିର ବିକାଶ ମଧ୍ୟ ସିମିତି । ଅର୍ଥାତ୍‌ ଏକରେ ବହୁ, ବହୁରେ ଏକ; ତ୍ୟାଗରେ ଭୋଗ, ଭୋଗରେ ତ୍ୟାଗ; ଭୂତରେ ଅଧ୍ୟାତ୍ମ୍ୟ ଓ ଅଧ୍ୟାତ୍ମ୍ୟରେ ଭୂତ; ବ୍ୟକ୍ତରେ ଅବ୍ୟକ୍ତ ଓ ଅବ୍ୟକ୍ତରେ ପ୍ରକାଶ—ଏହି ସବୁ କ୍ରିୟା ଓ ପ୍ରକ୍ରିୟାର ସମ୍ବନ୍ଧ ଯେତେ ବିସ୍ମୟ ଓ ବିଚିତ୍ର ବୋଲି ଆମର ଧାରଣା ହେଲେ ସୁଦ୍ଧା ପରସ୍ପର ଏକ ମଧୁର ସଂପର୍କରେ ଆବଦ୍ଧ—ସଚରାଚର ପୃଥିବୀ ଯେପରି ଏକ ପରିବାରଭୁକ୍ତ ।

ତେଣୁ ଏହି ପରସ୍ପର-ବିରୁଦ୍ଧ ଧର୍ମର ସହଜ୍ଞାନ ଦ୍ୱାରା ଜୀବ ପରମାତ୍ମାଙ୍କ ସତ୍ତା ଉପଭୋଗ କରେ ଏବଂ ଏହି ବିଚିତ୍ର ତତ୍ତ୍ୱକୁ ଯେ ଦେଖେ ସେ ହୁଏ ଦ୍ରଷ୍ଟା କିମ୍ବା ଦାର୍ଶନିକ ।

ଆତ୍ମା ଯେତେବେଳେ ପରମାତ୍ମଙ୍କ ସହିତ ମିଳିତ ହୁଏ କିମ୍ବା ଏକ ପରିବାରଭୁକ୍ତ ହୁଏ, ସେଇଠି ବ୍ୟବଧାନ ସମୟର ଯେଉଁ ବିଚିତ୍ରତା ବା ରହସ୍ୟ ସୃଷ୍ଟି ହେଉଥିଲା, ତାହା ଅଚିରେ ବିଲୋପ ସାଧିତ ହୋଇ ଅନନ୍ତ ଅଭେଦ୍ୟ ଓ ପରମ ନିବେଦ୍ୟ ମହା ସତ୍ତା ଉପଭୋଗ କରେ । ତେଣୁ ବଂଶରକ୍ଷା ଓ ପିତାଙ୍କର ବାତ୍ସଲ୍ୟ-ମମତା ପ୍ରତି ଭ୍ରୂକ୍ଷେପ ନ କରି କର୍ତ୍ତବ୍ୟନିଷ୍ଠ ଧର୍ମପଦ ଯେତେ-ବେଳେ 'ବାରଣି ବଢ଼ାଇରେ ଦାଏ' କହି ପିତମପ୍ପ ଚନ୍ଦ୍ରଭାଗା

ଶରୀରରେ ଝାସ ଦେବାକୁ ଉଦ୍ୟତ, ସେତେବେଳେ ଗୋପବନ୍ଧୁଙ୍କ ଦାର୍ଶନିକ ହୃଦୟ ମଧୁରଭାବେ ଉପଭୋଗ କରୁଛି—

"ଜଳ ସ୍ଥଳ ନଭ ହେଲା ଏକ ଭାବ
ଲଭିଗଲା ବିଚିତ୍ରତା
ଅନନ୍ତ ଅଭେଦେ ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତା ।
ବାଳୁତ ହୃଦୟ ମିଶିଗଲା ସେହି
ମହା ଅନନ୍ତ ବିତାନେ
ଆନ ଭାବ ଭୁଲି ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।
ମୁହୂର୍ତ୍ତକେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱ ସାରା
ଭିତର ବାହାର କଲା ଏକାକାର
ଅମୃତ-ସଙ୍ଗୀତ-ଧାରା ।
ହୋଇ ଏକଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ-ଲହରେ
ଗାଏ ଧର୍ମପଦ ପରମ ଆନନ୍ଦେ
ଜୟ ଜଗଦୀଶ ହରେ ।"

କି ସୁନ୍ଦର ହୃଦୟର ଅଭିବ୍ୟକ୍ତି ! କି ସୁନ୍ଦର ଦାର୍ଶନିକ ଚିନ୍ତାଧାରାର ଉଲ୍ଲୋଳ କଲ୍ଲୋଳ ମାଧୁରୀ !! ସତେ କଣ ନିର୍ବିଜ୍ଞା-ନୁଭୂତି ବିନା ଏପରି ନିଗୂଢ଼ ଓ ଅଚିନ୍ତ୍ୟ ଭାବ-ସମ୍ପଦ ଅର୍ଜନ କରି ହୁଏନା ? ଭୂମା ଭୂମା ଭେଦି ଯେଉଁ ଅନାହତ-ସଙ୍ଗୀତ-ଲହରୀ ବିଶ୍ୱପୃଷ୍ଠରେ ଅବିରତ ନୃତ୍ୟ କରି ଯାଉଅଛି ତାର ମଧୁର

ଆସ୍ୱାଦନ ବିନା କଣ ତାଙ୍କର ହୃଦୟରୁ କାନ୍ଦି ଉଠିଥାନ୍ତା ବିହ୍ୱଳିତ ଓ ଉତ୍‌କଣ୍ଠିତ ଚିତ୍ତରେ ଶୁଣିବାକୁ ସେହି ଅମୃତ ସଙ୍ଗୀତ-ଲହରୀ— କାରାରୁଦ୍ଧ ଜୀବନର ରୁକ୍ଷ ଓ କର୍କଶ ପରିସ୍ଥିତି ମଧ୍ୟରେ !!! ?

"ଗମ୍ଭିରାରୁ କବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋ ପାଇଁ
କହି ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ।"

ଜୀବାତ୍ମା ଓ ପରମାତ୍ମାର ଏଇଠି ଅଦ୍ଭୁତ, ଅପୂର୍ବ ଓ ଅପରୂପ ମିଳନ । ଅମର-ସଙ୍ଗୀତର ମୃଦୁ ବାଣୀ ମୂର୍ଚ୍ଛନା ଆକୁଳିତ ଆତ୍ମା ପରିତୃପ୍ତି ଲଭିଛି । ଭକ୍ତ ଓ ଭଗବାନଙ୍କର ସମ୍ବନ୍ଧ ମଧୁର ଓ ଘନିଷ୍ଠ ହୋଇ ଉଠିଛି । ଆଶାପୂରିର କାମନା ପରିତୃପ୍ତିରେ ଯିମିତି ସେ ମତୁଆଲ୍ ହୋଇ ପରିପୂର୍ଣ୍ଣତାର ଯଶଗାନରେ ଅହରହ ମୁଖର, ଯିମିତି ଭକ୍ତ-ପ୍ରାଣ ଭଗବତ୍ ମିଳନରେ ବିଭୋଳ ରହି ଭଗବାନଙ୍କର ବିଶ୍ୱ-ମୂର୍ଚ୍ଛିତ ଅମିୟ ସଙ୍ଗୀତ ଶୁଣି ପାରିଛି । ଏହି ଉପଲକ୍ଷେ ବିଶ୍ୱକବି ରବୀନ୍ଦ୍ର କହିଅଛନ୍ତି—

"ତୁମି ନବ ନବ ରୂପେ ଏସ ପ୍ରାଣେ
ଏସ ଗନ୍ଧେ ବରନେ, ଏସ ଗାନେ ।
ତୋରା ଶୁନସ୍ ନି କି ଶୁନସ୍ ନି ତା'ର ପାୟେର ଧ୍ୱନି
ଐ ଯେ ଆସେ, ଆସେ, ଆସେ ।"

ଆରାଧ୍ୟ ଦେବତାଙ୍କୁ ଲଭିବା ନିମନ୍ତେ ପ୍ରାଣର ଉତ୍‌କଣ୍ଠା ଯେପରି ପ୍ରତୀକ୍ଷା କରି ବସିଛି । ତାର ମଙ୍ଗଳମୟତା ଉପରେ ଆସ୍ଥା ରଖି ଭକ୍ତପ୍ରାଣ ବ୍ୟାକୁଳିତ ଓ ଉତ୍‌କଣ୍ଠିତ ହୋଇଛି ।

ଏଉଠି ସ୍ମରଣ ରଖିବା ଦରକାର ଯେ କେବଳ ଏହି ଦିବ୍ୟାନୁଭୂତିର ଉପଭୋଗ ନିମିତ୍ତ ମାନବ-ଜୀବନ ଏକ ଅପୂର୍ବ ଧାତ୍ରିରେ ସୃଷ୍ଟି । ନୋହିଲେ ପଶୁଠାରୁ ତାର କିଛି ହେଲେ ପାର୍ଥକ୍ୟ ନାହିଁ । କାରଣ ଜୀବାତ୍ମା ଓ ପରମାତ୍ମାଙ୍କର ମିଳନ ପର୍ଯ୍ୟାୟ ଯେପରି ଅଦ୍ଭୁତ ତ୍ୟାଗ ଓ ସାଧନା ମଧ୍ୟ ଦେଇ ସୃଷ୍ଟି ହେଉଛି ସେଗୁଡ଼ିକର ପ୍ରକୃତ ଓ ପ୍ରଧାନ ସାଧକ ହେଉଛି ମନୁଷ୍ୟ । ଯେହେତୁ ସେ ଲଭି ପାରିଛି ଚିତ୍‌ଶକ୍ତିର ଉତ୍କର୍ଷତା ଓ ହିତାହିତ ଜ୍ଞାନର ପ୍ରତିଭା । କିନ୍ତୁ ତାର ପୂର୍ଣ୍ଣ ବିକାଶ ହେବା ଦରକାର । ସାମାନ୍ୟ ଅଗ୍ନି ସଂଯୋଗରେ କାଷ୍ଠ ଲୁକ୍‌କାୟିତ ଅଗ୍ନିକୁ ତେଜୀୟାନ ଯେପରି କରେ ସେପରି ଚିତ୍‌ଶକ୍ତିର ବିକାଶୋନ୍ମୁଖୀ ପ୍ରତିଭାକୁ ଦୃଢ଼ ଉଦ୍‌ଯୋଗ ବଶତଃ ଅନ୍ତରର ସାଧୁତା, ନୈଷ୍କିକତା ଓ ତ୍ୟାଗ ପ୍ରଭୃତି ପୂତମୟ କର୍ମସାଧନାଦ୍ୱାରା ଚରମ ପୂର୍ଣ୍ଣତ୍ୱ ପ୍ରଦାନ କରି ଉପଭୋଗ କରିପାରେ ଭଗବତ୍‌ ବିଭୂତି ।

କାରଣ ମାନବର ହୃଦସ୍ଥଳ ହେଉଛି ଏକ ପବିତ୍ର ଯଜ୍ଞକୁଣ୍ଡ, ଯହିଁରେ ଦୁର୍ବାର ଭୋଗ ଲିପ୍‌ସା, ମନର ଚଞ୍ଚଳତା, ସ୍ୱାର୍ଥପରତା ଓ ଭୀରୁତା ପ୍ରଭୃତି ଦୁର୍ଲକ୍ଷଣ ତଥା ଦୁର୍ବଳତାସମୂହ ଆହୁତି ଦିଆଯାଇ ଏକ ଦିବ୍ୟ ପ୍ରଫୁଲ୍ଲତା ଉପଭୋଗରେ ସଚ୍ଚିଦାନନ୍ଦ ମୂର୍ତ୍ତି ଦର୍ଶନ କରାଯାଇ ପାରେ ।

ତେଣୁ ଆତ୍ମୋତ୍ସର୍ଗ ହିଁ ଯଜ୍ଞ ଅର୍ଥାତ୍‌ "ସମସ୍ତ କାମନାର ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ଏଇ ବିଶ୍ୱକର୍ମରେ ନିଜ କର୍ମକୁ ବଳି ଦେବା ମାନବର ଯଜ୍ଞକର୍ମ ।" କିମ୍ବା "ଧର୍ମରେ ନିଜକୁ ଅବିଚ୍ଛିନ୍ନ ବା ବ୍ୟକ୍ତ କରିବା ହିଁ ଏଇ ବ୍ରହ୍ମପୁରୁଷର ଏକ ବିରାଟ ଯଜ୍ଞ କର୍ମ ।

× × × ଏଇ ଯଜ୍ଞ ହିଁ ବ୍ରହ୍ମପୁରୁଷର ଆତ୍ମ ବିସ୍ତାର, ଆତ୍ମବଳ ବା ଆତ୍ମତ୍ୟାଗ ରୂପେ ଦେବ ଓ ଋଷିମାନଙ୍କ ଠାରେ ପ୍ରତିଭାତ ।"

ସେହିହେତୁ ଋଷିପ୍ରତିମ ଗୋପବନ୍ଧୁ ମାନବର ଜୀବନ ସଙ୍ଗା ନିରୂପିତ କରି କହିଅଛନ୍ତି—

"ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ,
ତତ୍ତ୍ୱଅନୁବଦ୍ଧ ମାନବର ସତ୍ତ୍ୱ ।"

ଏହି ଦର୍ଶନ ତତ୍ତ୍ୱହିଁ କବିର କବିତାକୁ ମାଧୂର୍ଯ୍ୟମୟୀ ଓ ରସମୟୀ କରେ । କାରଣ ସୃଷ୍ଟିରହସ୍ୟ ତଥା ବିଚିତ୍ରତାକୁ ଯେତେ ପରିମାଣରେ କବି ତାର ହୃଦୟ ସ୍ପନ୍ଦନରେ ଫୁଟାଇପାରେ ସେତେ ଉତ୍କୃଷ୍ଟତର ଭାବେ କବିତା ତାର ଆଦୃତ ହୁଏ ।

ଏହି ଭାବ କବିର ଜନ୍ମଗତ ହୋଇଥିବାରୁ ସାର୍ ଫିଲିପ୍ ସିଡ୍‌ନି କହିଅଛନ୍ତି— "**Poet is indeed the right philosopher** ।" ଯେହେତୁ କବି ସେହି ଅଦୃଶ୍ୟ ଓ ଅନନ୍ତ ଲୀଳାକୁ ଜ୍ଞାନଚକ୍ଷୁଦ୍ୱାରା ଦେଖିପାରେ । ଭାବାବ୍‌ଧିରେ ମଗ୍ନମାନ ରହି ଭାଷା ତୁଳିକାରେ ଯେଉଁ ରୂପ ରୂପାୟିତ କରେ ସେହି ଭିତରେ ଲୁକ୍‌କାୟିତ କରି କବି ରଖିଥାଏ ଏହି ଦାର୍ଶନିକ ତତ୍ତ୍ୱ, ଯଦ୍ଦ୍ୱାରା କ କବିତା-ଚଳିକା-ଅନ୍ତର ସୌନ୍ଦର୍ଯ୍ୟ ଓ ମାଧୂର୍ଯ୍ୟରେ ଗରୀୟାନ ହୋଇ ପ୍ରାଣକୁ ତୃପ୍ତିର ଅବକାଶ ଦେଇ ନଥାଏ ।

**ହସ୍ତଶିଳ୍ପ ଓ ଅର୍ଥନୀତି**:—ଅର୍ଥନୈତିକ ଜୀବନ ପକ୍ଷେ ଶିଳ୍ପର ଯେପରି ଗୁରୁତ୍ୱ ରହିଛି ତାହା ଅବାସ୍ତବ ନୁହେ । କାରଣ ରୁଷିଆ ଓ ଆମେରିକା ବିଶ୍ୱପୃଷ୍ଠରେ ଯେଉଁ କାରଣ ବିଶେଷତଃ ଅତି ଧନଶାଳୀ ଓ ପ୍ରଭାବଶାଳୀ ଦେଶ ରୂପେ ପରିଗଣିତ, ସେହି ମୂଳରେ

ରହିଛି ଏହି ଶିଳ୍ପର ପୂର୍ଣ୍ଣ ବିକାଶ । ମନର ଉଲ୍ଲାସ ପାଇଁ ସାହିତ୍ୟ ଯେପରି ଆବଶ୍ୟକ, ଅର୍ଥନୈତିକ ଜୀବନ ତଥା ଜୀବନଧାରଣ ମାନ ବୃଦ୍ଧି ପକ୍ଷେ ଶିଳ୍ପ ମଧ୍ୟ ସେପରି ପ୍ରୟୋଜନୀୟ । କାରଣ ମନ ଓ ଦେହ ପରସ୍ପର ଏପରି ଏକ ନିବିଡ଼ ସୂତ୍ରରେ ଆବଦ୍ଧ ଯେ ଏକର ପ୍ରଫୁଲ୍ଲତାରେ ଅନ୍ୟଟି ପ୍ରଫୁଲ୍ଲିତ, ଏକର ବେଦନାରେ ଅନ୍ୟଟି ମଧ୍ୟ ବେଦନାସକ୍ତ । ଅତଏବ ମାନସିକ ଉଲ୍ଲାସ ଯଦିଓ ପ୍ରକୃତିରେ ଅନୁଭୂତ କରିବା ଇଚ୍ଛି ତେବେ ଶାରୀରିକ ସୁସ୍ଥତା ବଜାୟ ରଖିବା ଉଚିତ । ସେହେତୁ ଅର୍ଥର ଆବଶ୍ୟକତା ସେଇଠି ଅନୁଭୂତ ହୁଏ । କାରଣ ଅର୍ଥର ସ୍ୱଚ୍ଛଳତା ହିଁ ଦେହ ତଥା ମାନସିକ ବୃଦ୍ଧିର ସହାୟକ ତଥା ପରମ ବନ୍ଧୁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯଦ୍ଦ୍ୱାରା କି "ଅନ୍ନ ଚିନ୍ତା ଚମତ୍କାର" ଅବସ୍ଥାରୁ ତ୍ରାଣ ପାଇ ଉତ୍କୃଷ୍ଟ ସାହିତ୍ୟ ରଚନାରେ ପ୍ରତିଭା ନିୟୋଜିତ ହେବ । ଅବଶ୍ୟ ପ୍ରତିଭା ଯେ ଦୁଃଖ, ଦୈନ୍ୟ ଭିତରେ ହଜିଯାଏ ନାହିଁ—ତା' ସତ, କିନ୍ତୁ ଅଭାବ ଓ ଅନାଟନ ପୀଡ଼ିତ ମନର ଯେଉଁ ଉଦ୍‌ବେଗ ଓ ନୈରାଶ୍ୟ, ତାହା କିଣ ସହଜେ ପ୍ରତିଭାର ଯଥୋପଯୁକ୍ତ ସେବାବିଧି ପାଇଁ ସାହାଯ୍ୟ କରିବ ? ମହାତ୍ମା ପଠାଣି ସାମନ୍ତ କିମ୍ବା ଗଙ୍ଗାଧର ମେହେର ବା ଶଶିଭୂଷଣ ରାୟ ପ୍ରଭୃତି କବି ଓ ଜ୍ୟୋତିର୍ବିଦମାନଙ୍କ ପ୍ରତିଭା-ଲୋକରୁ ଯେଉଁ ଉଜ୍ଜ୍ୱଳ ରଶ୍ମି ଲଭି କରି ଆମେ ଦୁନିଆରେ ନିଜର ଗୌରବକୁ ପ୍ରତିପାଦିତ କରୁଛୁ, ସେମାନଙ୍କର ଯଦି ଆର୍ଥିକ ସ୍ୱଚ୍ଛଳତା ଥା'ନ୍ତା ତେବେ ଏହା ଅପେକ୍ଷା ଯେ ଆହୁରି ଅମୂଲ୍ୟ ସମ୍ପଦ ଲଭ ହୋଇନଥାନ୍ତା, କିଏ କହି ପାରିବ !!!

କହିବା ବାହୁଲ୍ୟ ନୁହେ ଯେ ଶିଳ୍ପ ବିଶେଷତଃ ହସ୍ତଶିଳ୍ପ ହେଉଛି ଶିକ୍ଷାପ୍ରଣାଳୀର ଏକ ଅପରିହାର୍ଯ୍ୟ ଅଙ୍ଗ, ଯଦ୍ଦ୍ୱାରା ହସ୍ତ

ଓ ଚକ୍ଷୁ ତାଲିମପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ବାସ୍ତବ କ୍ଷେତ୍ରରେ ବୁଦ୍ଧିଶକ୍ତି ପରିବର୍ଦ୍ଧିତ ଓ ସତେଜ ହୁଏ, ମନର ଏକାଗ୍ରତା ଆସେ । କର୍ତ୍ତବ୍ୟ ପାଳନରେ ସ୍ଫୂର୍ତ୍ତି ଆସେ । ଆଳସ୍ୟ ଓ ଅଜ୍ଞାନତା ଦୂର ହୋଇ ମନରେ ଏକ ଉତ୍ସାହ ଦୀପ୍ତି ଖେଳିଉଠେ । କାରଣ ବାହ୍ୟ ଆକର୍ଷଣରେ ସ୍ନାୟୁଗୁଡ଼ିକ ଯେପରି ଚଞ୍ଚଳ ହୋଇଥାନ୍ତି କିମ୍ବା ସାମୟିକ ଉତ୍ତେଜନାବଶତଃ କ୍ଷିପ୍ର ଗତିରେ ଶୋଣିତ ପ୍ରବାହ ଶରୀରସାରା ପ୍ରବାହିତ ହୋଇ ଯେପରି ଅସ୍ୱାଭାବିକ ଅବସ୍ଥା ସୃଷ୍ଟି କରେ, ତଦ୍ଦ୍ୱାରା ମନୁଷ୍ୟ ବିପଥଗାମୀ ହେବାର ଯଥେଷ୍ଟ କାରଣ ରହିଛି । ଗଠନମୂଳକ ଚିନ୍ତାଧାରା ଥିଲେ ସୁଦ୍ଧା ତାହା ସ୍ୱପ୍ନୋତ୍‌ଥିତ ଚେତନା ଭିତରେ ହଜିଯାଏ । ତେଣୁ ଫ୍ରୋବେଲ ତାଙ୍କର **'The Education of Man'** ବହିରେ କହିଅଛନ୍ତି— ବର୍ଦ୍ଧିଷ୍ଣୁ ବାଳକଙ୍କ ପକ୍ଷେ କର୍ମହୀନତା, ଔଦାସ୍ୟ, ଅଜ୍ଞତା, ବହୁ ଅନାବଶ୍ୟକ ଆଳାପ ଉତ୍କଟ ଗରଳ ବା **"terrible poison"** ସ୍ୱରୂପ । ଅତଏବ ସେହି ଦୁର୍ବଳତାରୁ ରକ୍ଷା ଲଭିବା ନିମିତ୍ତ ହସ୍ତଶିଳ୍ପ ହିଁ ଏକାନ୍ତ ସହାୟକ । ଏହା ଏକାଗ୍ରତାର ଜନନୀ ସ୍ୱରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ହସ୍ତଶିଳ୍ପର ଆହୁରି ଲକ୍ଷଣ ଦେବାକୁ ଯାଇ ସେ କହିଅଛନ୍ତି, **'a panacea of mental and physical health and domestic and civil welfare'** ଅର୍ଥାତ୍ ହସ୍ତଶିଳ୍ପ ମାନସିକ, ଶାରୀରିକ ତଥା ଗୃହୀ ସମାଜର ମଙ୍ଗଳ ପାଇଁ ଯାବତୀୟ ରୋଗର ଅବ୍ୟର୍ଥ ମହୌଷଧି । କାରଣ ଆଳସ୍ୟ, ଅଜ୍ଞାନତା ପ୍ରଭୃତି ଲକ୍ଷ୍ମୀଛଡ଼ା ପ୍ରକୃତି ଅର୍ଥାତ୍ ଦୁର୍ଲକ୍ଷଣ—ଯଦ୍ଦ୍ୱାରା ବ୍ୟକ୍ତି ତଥା ସମାଜ ପଙ୍ଗୁ ଅବସ୍ଥା ଭଜେ । ଉତ୍ତରୋତ୍ତର ଉନ୍ନୟନଯୋଗୁଁ ଦେଶ ଯେପରି ପ୍ରଗତିଶୀଳ ରାଷ୍ଟ୍ରରୂପେ ପରିଚିତ ହୋଇଥାନ୍ତା, ତା' ପରିବର୍ତ୍ତେ

ବନପ୍ରାନ୍ତର ଅପେକ୍ଷା ଅଞ୍ଚଳସ୍ଥ ମାଟିତର ହୁଏ । ଫ୍ରୋବେଲ ଉପଯୁକ୍ତ ନାଗରିକ ହେବା ନିମିତ୍ତ ଆହୁରି ନିର୍ଦ୍ଦେଶ ଦେଇ କହିଅଛନ୍ତି—
**"That man only understands thoroughly that which he is able to produce."**

ଆଜିକାଲି ଦୁନିଆରେ ଏହି ଉକ୍ତିର ତାତ୍ପର୍ଯ୍ୟ ବେଶ୍ ଅନୁଭୂତ । କାରଣ ଯେ ଯେଉଁ କର୍ମରେ ଅଭିଜ୍ଞତା ଅର୍ଜନ କରିଥିବ ତାକୁ ସେହି ଦିଗରେ ତାଲିମ ଦେବାଦ୍ୱାରା ଉତ୍ତରୋତ୍ତର ଉନ୍ନତି ସାଧିତ ହେବା ସଙ୍ଗେ ସଙ୍ଗେ ଦେଶ ତଥା ଜାତିର ଅର୍ଥୋନ୍ନତି ସମ୍ପର୍କରେ ପ୍ରଭୂତ ଉପକାର ସାଧିତ ହୋଇଥାଏ । କିନ୍ତୁ ଆଜିକାର ପାଠ୍ୟ-ପ୍ରଣାଳୀ ସେପରିଭାବେ ନିୟନ୍ତ୍ରିତ ନୁହେଁ, ଯଦ୍ଦ୍ୱାରା କି ଆମେ କିଛି ଶାସକ ଭାବେ ସଦ୍ୟଡ଼ିଗ୍ରୀଧାରୀ ଯୁବକଙ୍କୁ ଆଶା କରିବା । 'ସାହୁ କହୁଛି, ପାଚିଲା ଧାନରେ ମଇ ଦେଇଛି' ଭଳି ଆଜିକାର ପାଠ୍ୟପ୍ରଣାଳୀ । ସେଥିରେ ନାହିଁ ଭାବୀ ସମାଜର ସୁଗଠିତ ପରି-କଳ୍ପନା କିମ୍ବା ଯୋଜନା । **Carlyle** କହିଲା ପରି **"The true University of these days is a collection of books."** ।

ତାହିଁରେ ପୁଣି ଶିକ୍ଷା ଓ ଅଭିଜ୍ଞତା ପରସ୍ପର ଭିନ୍ନାଭିନ୍ନ । ଶିକ୍ଷାଦ୍ୱାରା ଯାହା ସାଧିତ ହୋଇପାରେ ନାହିଁ, ଯଦିଓ ସମୟ ସାପେକ୍ଷରେ ହୁଏ, ତେବେ ସୁଦ୍ଧା ଅଭିଜ୍ଞତା ଯେପରି ସୁଷ୍ଠୁରୂ-ରୂପେ ସମସ୍ୟାର ସମାଧାନ କରେ, ସେପରି ହେବ ନାହିଁ । ଅତଏବ ଯେତେ ଶିକ୍ଷାସମ୍ପନ୍ନ ବ୍ୟକ୍ତି ହେଉ ନା କାହିଁକି ଯେ କୌଣସି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବହନ କରିବାର ଅବ୍ୟବହିତ ପୂର୍ବରୁ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରିବା ଉଚିତ ।

ସେହି ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ପ୍ରତି ଦୃଷ୍ଟି ଦେଇ ଜାଣାସ୍ତୁ କବି ଗୋପବନ୍ଧୁ ହସ୍ତଶିଳ୍ପ ଯୋଜନାକୁ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି—ଯଦ୍ଦ୍ୱାରା କି ଆମର ଚଞ୍ଚଳ ମନ ଦମନ ହୋଇ ସ୍ଥିରତା ଭଜିବା ସଙ୍ଗେ ସଙ୍ଗେ **Mind concentration** ବା ମନର ଏକାଗ୍ରତା ଆସେ, ବାସ୍ତବାନୁଭୂତିରେ ଯେ କୌଣସି ସମସ୍ୟାର ସମ୍ମୁଖୀନ ହେବାକୁ ସାହସ ଓ ଧୈର୍ଯ୍ୟ ଆସେ ।

ଏଇଠି ମନେ ରଖିବା ଉଚିତ ଯେ ଏହି **Manual** କିମ୍ବା **Physical Training** ହେଉଛି ଆର୍ଯ୍ୟସଂସ୍କୃତିର ପାରମ୍ପରିକ ଆଦର୍ଶ । ଗୁରୁକୁଳ ଆଶ୍ରମରେ ବିଦ୍ୟାର୍ଥୀମାନେ ବିଦ୍ୟାଧ୍ୟୟନ କରିବା ସଙ୍ଗେ ସଙ୍ଗେ ଶାରୀରିକ ପରିଶ୍ରମ ମଧ୍ୟ କରୁଥିଲେ । ବଣ ଜଙ୍ଗଲ ବୁଲି ବୁଲି କାଠ ସଂଗ୍ରହ କରିବା ଓ ହାଣିବା, ବାଡ଼ି ବଗିଚାରେ ସବୁ ରକମ ଫଳ ଆଦାୟ କରିବା, ଧାନ, ମୁଗ, ବିରି ପ୍ରଭୃତି ଶସ୍ୟ ଉତ୍ପନ୍ନ କରିବା—ସେମାନଙ୍କର ଥିଲା ନିତ୍ୟ ନୈମିତ୍ତିକ କାର୍ଯ୍ୟପନ୍ଥା । ଯଦ୍ଦ୍ୱାରା କି ସେମାନେ ଅତ୍ୟନ୍ତ ସୁସ୍ଥ ଓ ସବଳ ହେବା ସଙ୍ଗେ ସଙ୍ଗେ ଧୀଶକ୍ତିର ପ୍ରଖରତା ଜନ୍ମାଇ ଥିଲେ, ବିଳାସକୁ ଜୀବନର ଧୂମକେତୁ ରୂପେ ଗଣ୍ୟ କରୁଥିଲେ ।

କିନ୍ତୁ ଆଜି ତାହା ଆମ ଛାତ୍ରସମାଜର ଅମୂଲ୍ୟ ନିଧି ହୋଇଛି । ବିଳାସ ଅଭାବରେ ଆଜି ଛାତ୍ର-ମାନସ ଶିକ୍ଷା ପ୍ରତି ଆକୃଷ୍ଟ ହୋଇ ପାରୁନାହିଁ । ସଦାସର୍ବଦା ସେମାନେ ଲୋଡ଼ନ୍ତି ବସନ୍ତ ଭୋଗ ଓ ବିଳାସ, ଯଦ୍ଦ୍ୱାରା ସେମାନଙ୍କର ବହିର୍ମୁଖୀ ମନୋବୃତ୍ତି ଶ୍ରମବିମୁଖ ହୋଇଥାଏ ଏବଂ ସାମାନ୍ୟ ଶ୍ରମରେ ହତୋତ୍ସାହ ହେବା ସଙ୍ଗେ ସଙ୍ଗେ ଶ୍ରମକୁ ଲଜ୍ଜାର ସଙ୍କେତ ରୂପେ ଗଣ୍ୟ କରିଥାଏ । ଏପରିକି ନିଜର **Bag** ବା ମୁଣିଟିଏ ଧରି ଯିବାକୁ ଲଜ୍ଜା ବୋଧ

କରେ । ସେଥିପ୍ରତି ଲକ୍ଷ୍ୟ କରି ତେଣୁ ଫ୍ରୋବେଲ କହିଅଛନ୍ତି—"ବାଲ୍ୟକାଳର ଯେଉଁ ସ୍ୱାଭାବିକ ମନୋବୃତ୍ତି କାଠିକୁଟାରେ, ମାଟି, ବାଲି, ଆମ୍ବ, ପଣସ, ଘର ପ୍ରଭୃତି ପ୍ରସ୍ତୁତ କରିବାରେ ହସ୍ତ-କୌଶଳ ଜନ୍ମାଉଥିଲା, ତାହା ଅକାଳେ ବିନାଶପ୍ରାପ୍ତ ହୋଇ ଜୀବନର କର୍ମ-ରୂପକୁ ବିକୃତ କରିଦେବ ।"

ଠିକ୍ ସେହି ଦଶା ଆମ ଦେଶରେ ଦେଖା ଦେଇଛି । ବିଶେଷତଃ ଯେଉଁ ଛାତ୍ରସମାଜ ଉପରେ ଦେଶର ଭବିଷ୍ୟତ ନିର୍ଭର କରେ ସେମାନେ ଆଜି ସେହି ପନ୍ଥାବଲମ୍ବୀ ନ ହେବେ ବା କିମିତି ? ବହି-ଗିରିର ରୁକ୍ଷ ବକ୍ଷଦେଶରେ ଯାତ୍ରା କରି କରି ସୁକୁମାରମତି ଯୁବକର ପାଦ ତଥା ହୃଦୟରେ ଯେଉଁ ଅସହ୍ୟ ବେଦନା ଜାତ ହୁଏ, ସେଇଠି ମାନସିକ ପ୍ରଫୁଲ୍ଲତା ନିମିତ୍ତ ପାଉଡ଼ର, ଲିପ୍‌ଷ୍ଟିକ୍, ଟୁଥ୍‌ପେଷ୍ଟ, ସାବୁନ୍, ଇଭନ୍‌ଫେସ୍ ସମେତ ତମାଖୁ ପାନରେ ବିଭୋର କାହିଁକି ନ ରହିବେ ? ଏହା ଶିକ୍ଷା-ପ୍ରଣାଳୀର ଦୁର୍ବାର ପିପାସା ନା ଛାତ୍ରସମାଜର ସ୍ୱତଃପ୍ରବୃତ୍ତି ଅଭିବ୍ୟକ୍ତି !!!

ହେବା ମଧ୍ୟ ସ୍ୱାଭାବିକ । କାରଣ ଆଧୁନିକ ଶିକ୍ଷା ଯେପରି ବୈଷୟିକ ପାଠ୍ୟକ୍ରମକୁ ଅତ୍ୟଧିକ ଗୁରୁତ୍ୱ ଦିଏ, ନୈତିକତାର ଅଭିବୃଦ୍ଧି ଉପଲକ୍ଷେ ସେପରି କିଛି ଗଠନମୂଳକ ଚିନ୍ତାଧାରା ଗ୍ରହଣ କରେ ନାହିଁ; ଯଦ୍ଦ୍ୱାରା କି ଛାତ୍ର ସମାଜ ପୋଥି ବାଇଗଣ ସ୍ୱାଦ ଉପଭୋଗରେ ଉଲ୍ଲସିତ ହେବା ବ୍ୟତୀତ ଆମ୍ଭାକୁ ଚିହ୍ନିବାର ଉପାୟ ନଥାଏ; ଯାହାର ପ୍ରତିକ୍ରିୟାରେ ହିଂସା, ଦ୍ୱେଷ, ବିଦ୍ୱେଷ ପ୍ରଭୃତି କୁପ୍ରବୃତ୍ତିସମୂହ ମୁଣ୍ଡ ଟେକି ଉଠି ସାମାଜିକ ଜୀବନର ସୃଦୃତା ଓ ଶୃଙ୍ଖଳତାକୁ ସମୂଳେ ଧ୍ୱଂସ କରେ ଏବଂ ଦୁର୍ବିଷହ ଜୀବନ ଯାପନରେ ମାନବସମାଜ ଭାଙ୍ଗି ପଡ଼େ ।

ଏଇଠି ସମାଜ ଓ ଶିକ୍ଷାର ପରସ୍ପର ମଧୁର ସମ୍ପର୍କ ଯେଉଁ କାରଣରୁ ଛିନ୍ନ ହୁଏ କିମ୍ବା ସମାଜ ଓ ଶିକ୍ଷିତମଣ୍ଡଳୀଙ୍କ ମଧ୍ୟରେ ଯେଉଁ ଅସାମଞ୍ଜସ୍ୟ ଦେଖାଯାଏ, ତାର ପ୍ରଧାନ କାରଣ ହେଉଛି ଆଧୁନିକ ଶିକ୍ଷାପ୍ରଣାଳୀରେ ନୈତିକତାର ମୂଲ୍ୟ ନିରୂପିତ ନ ହୋଇଥିବା ହେତୁ । ସୁତରାଂ ବିଦ୍ୟାର ପ୍ରକୃତ ସଂଜ୍ଞା ନିର୍ଣ୍ଣୟ କରି କୁହାଯାଇଛି—

"ସ୍ୟା ବିଦ୍ୟା, ଯାତ୍ତୁ ଦର୍ଶିତେଶ୍ୱର" ଅର୍ଥାତ୍ ଈଶ୍ୱରଙ୍କୁ ଦର୍ଶନ ଲଭିବା ନିମନ୍ତେ ଯେଉଁ ଶିକ୍ଷା ସହାୟକ ହୁଏ ତାହାହିଁ ବିଦ୍ୟା ଏବଂ ଯାହା ଅଚିର ବିଷୟ ବାସନାକୁ ଉତ୍ତେଜିତ କରି ମନୁଷ୍ୟକୁ ବିପଥଗାମୀ କରାଏ, ତାହା ଅବିଦ୍ୟା ।

କାରଣ କଳା ଓ ବିଜ୍ଞାନ ପ୍ରଭୃତି ଶିକ୍ଷା ଯେପରି ଜ୍ଞାନର ଉତ୍କର୍ଷ ସାଧନ କରେ, ଆତ୍ମାର ବିକାଶ ନିମନ୍ତେ ସେପରି ଧର୍ମର ପ୍ରଭାବ ଅତ୍ୟାବଶ୍ୟକ ହୁଏ । ଯିମିତ ମଧ୍ୟ ସମାଜକୁ ସୁସ୍ଥ ଓ ସୁନ୍ଦର କରେ ! ଯଦ୍ଦ୍ୱାରା ବିବେକ ତଥା ଆତ୍ମାର ବିକାଶରେ ହୃଦୟର ଦୁର୍ବାର ଲାଳସା ଦମନ ହୋଇ ଶ୍ରେୟ ପନ୍ଥା ଅନୁସରଣ କରିବା ନିମିତ୍ତ ମନୁଷ୍ୟକୁ ସାହସୀ ଓ ଧୈର୍ଯ୍ୟଶାଳୀ କରେ । ତେଣୁ ନୈତିକ ଶକ୍ତି ତଥା ବିବେକର ଉନ୍ନତି ନିମିତ୍ତ ଧର୍ମଶିକ୍ଷା ଶିକ୍ଷାପ୍ରଣାଳୀର ଏକ ଅପରିହାର୍ଯ୍ୟ ଅଙ୍ଗ ରୂପେ ବିବେଚିତ ହୋଇଥିଲା ଋଷି-ଆଶ୍ରମ-ଶିକ୍ଷାରେ । ଆହୁରି ଅବଶ୍ୟ ସ୍ୱୀକୃତ ଯେ ଆଜିକାର ଅର୍ଥନୈତିକ ବୈଷମ୍ୟ ବହୁ ପରିମାଣରେ ଏହି ନୈତିକ ପତନ ସକାଶେ ଦାୟୀ । କାରଣ **Struggle for existence** ବା ବଞ୍ଚି ରହିବା ନିମନ୍ତେ ମନୁଷ୍ୟ କେଉଁ ପ୍ରାଗ୍ ଐତିହାସିକ ଯୁଗରୁ ସଂଗ୍ରାମ କରି ଆସୁଛି । ଏ ସଂଗ୍ରାମର କ୍ରମ

ପରିଣତି ପ୍ରତି ଦୃଷ୍ଟି ଦେଲେ ଜଣାଯାଏ, ଏହା ଆଦ୍ୟମାରମ୍ଭରୁ ଚାଲିଲା ପ୍ରକୃତି ସହିତ । କାଳକ୍ରମେ ତାହା ବ୍ୟକ୍ତି ବ୍ୟକ୍ତି ଭିତରେ ପୁଣି କୃଷିପ୍ରଣାଳୀ ଉଦ୍ଭାବିତ ହେବା ସଙ୍ଗେ ସଙ୍ଗେ ଗୋଷ୍ଠୀ ଗୋଷ୍ଠୀ ଭିତରେ ଏବଂ ଜନବହୁଳତା ଯୋଗୁଁ ରାଜ୍ୟ ରାଜ୍ୟ ମଧ୍ୟରେ ସଂଘଟିତ ହୋଇ ପରିଶେଷରେ ଅର୍ଥାତ୍ ଆଜିକାର ବିଜ୍ଞାନ ବିକାଶ ଯୋଗୁଁ ପୃଥିବୀର ଦୂରତ୍ୱ ଯେତେବେଳେ କମିଗଲା ସେତେବେଳେ ତାହା ଆନ୍ତର୍ଜାତିକ ରୂପ ଧାରଣ କରିଅଛି । ତେଣୁ ଆମେରିକା ଓ ରୁଷିଆ ଆମ ଦେଶଠାରୁ ଯେତେ ଦୂରରେ ଅବସ୍ଥିତ ହେଲେ ସୁଦ୍ଧା ସେମାନଙ୍କ ଅର୍ଥନୈତିକ ଓ ରାଜନୈତିକ ପ୍ରଭାବ ଆମ୍ଭଙ୍କୁ ପ୍ରଭାବିତ କରୁଛି ବୋଲି କହିଲେ ଧୃଷ୍ଟତା ହେବ ନାହିଁ । ପୁଣି ଯେଉଁ **ism** ବା ବାଦ ଓ ମତର ଘାତ ପ୍ରତିଘାତ ରାଜନୈତିକ ତଥା ଅର୍ଥନୈତିକ କ୍ଷେତ୍ରରେ ସଂଘର୍ଷ ସୃଷ୍ଟି କରିଛି, ସେଥିଭିତରେ ସାଧାରଣ ଗୃହସ୍ଥର ସାମାଜିକ ଓ ପାରିବାରିକ ଜୀବନ ଅତି ଦୁର୍ବିଷହ ଓ ଜଟିଳ ହୋଇ ଯାଇଛି, ଯଦ୍ଦ୍ୱାରା କି ଜୀବନ ସଂଗ୍ରାମ ଅତି ଭୟାବହ ରୂପ ଧାରଣ କରିଛି । ଏକପକ୍ଷେ ଅଭାବଗ୍ରସ୍ତ ପ୍ରାଣର ସ୍ୱାଭାବିକ ସଂଗ୍ରାମ ଯେପରି ତୀବ୍ର ହୋଇ ଉଠୁଛି ବିଳାସୀର ଭୋଗ ଲିପ୍ସା ସେପରି ଅତ୍ୟଧିକ ପରିମାଣରେ ବୃଦ୍ଧିପ୍ରାପ୍ତ ହେଉଛି । ଏଥିପୋଗେ ଜୀବନଧାରଣ ମାନ ଏକ ବିଷମ ପରିସ୍ଥିତି ଭିତରେ ନିଷ୍ପେଷିତ ହୋଇ ସାମାଜିକ ଜୀବନରେ ଏକ ଅଶୋଭନୀୟତା ସୃଷ୍ଟି କରିଅଛି । ସେଇଠି ଉଭୟଙ୍କର ତୃଷ୍ଣା ଚରିତାର୍ଥ ନିମିତ୍ତ ଯେ କୌଣସି ଅସତ୍ ଉପାୟ ଅବଲମ୍ବନ କରିବାରେ କେହି କୁଣ୍ଠାବୋଧ କରନ୍ତି ନାହିଁ । 'ଯେନକେନ ପ୍ରକାରେଣ' ତୃଷ୍ଣାର ଶାନ୍ତିହିଁ ପରମ ମଙ୍ଗଳ ବୋଲି ବିବେଚିତ ହୋଇଥାଏ । ଯେହେତୁ ନୈତିକତାର ମୂଲ୍ୟ ଅତିଶୟ ହ୍ରାସ ହୁଏ ଓ ହିଂସା, କଠ,

କପଟ ଇତ୍ୟାଦି ସମାଜରେ ଦେଖାଦିଏ । ସୁନ୍ଦର ଓ ସରଳ ଜୀବନ କୁତ୍ସିତ ରୂପରେ ରୂପାୟିତ ହୁଏ ।

ଅତଏବ ଏହି କମ୍ବୃତ କମାକାର ପ୍ରବୃତ୍ତିମାନଙ୍କରୁ ସମାଜକୁ ରକ୍ଷା କରିବା ନିମିତ୍ତ ଦରକାର ହୁଏ ଧର୍ମ ତଥା ନୀତି ପ୍ରେରଣାର ପ୍ରୟୋଗ—ଯଦ୍ଦ୍ୱାରା କି ଉଭୟଙ୍କ ତୃଷ୍ଣା ପରିତୋଷ ଲାଭ କରିବ ପୁଣି ଜନସମାଜର ମଙ୍ଗଳ ହେବ । ଏହି ପ୍ରସଙ୍ଗରେ ଭାଗବତକାର ଜଗନ୍ନାଥ ଦାସେ କହିଅଛନ୍ତି—

"ଧନ ଅର୍ଜିଲେ ଧର୍ମ କରି
ଧର୍ମେ ପ୍ରାପତି ନରହରି ।"

ଅର୍ଥାତ୍—ସଦୁପାୟରେ ଧନାର୍ଜନ କରି ଅଭାବ ଓ ଦୁର୍ଦ୍ଦଶାଗ୍ରସ୍ତ ଜନ-ଦେବତାଙ୍କୁ ସାହାଯ୍ୟ କଲେ କିମ୍ବା ଜନହିତକର କାର୍ଯ୍ୟରେ ବିନିଯୋଗ କଲେ ପରଂବ୍ରହ୍ମ ନାରାୟଣ ପ୍ରାପ୍ତ ହୁଅନ୍ତି । ଏହି ଉକ୍ତିରେ ଧନାଢ଼୍ୟ ବ୍ୟକ୍ତିର ଅସଦାଚରଣମୂଳକ ଅର୍ଜନକୁ ଯେପରି ଧର୍ମୋଚିତ ମାର୍ଗରେ ପରିଚାଳିତ କରିଛନ୍ତି ସେପରି ମଧ୍ୟ ଅଭାବଗ୍ରସ୍ତ ହୃଦୟରେ ଆଶା-ବାରି ସିଞ୍ଚନ କରିଅଛନ୍ତି । ତେଣୁ **Simple living & high thinking** ବା "ସରଳ ଜୀବନ-ଯାପନ ଓ ଉଚ୍ଚ ଚିନ୍ତନ" ଯାହା କି ଆର୍ଯ୍ୟଧର୍ମର ମୌଳିକ ନୀତି, ସେଥିପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ଏକ ନୈତିକ ଛାପ ପକାଇ ଅଛନ୍ତି ।

ଅତଏବ ଏହି ସବୁ ଦୋଷ ଦୁର୍ବଳତା ସମାଜରୁ ବହିର୍ଭୂତ କରିବା ନିମନ୍ତେ ଶିକ୍ଷାକ୍ଷେତ୍ରରେ ନୈତିକତାର ବିକାଶ ହେବା ଜରୁରି ଗୃହି । ଯେପରି କି ଜୀବନର ପ୍ରତ୍ୟେକ କର୍ମ ସାଧନା ପବିତ୍ରଭାବେ ସାଧିତ ହୋଇ ଐଶ୍ୱରିକ ସତ୍ତା ଉପଲବ୍ଧିରେ

ପ୍ରାଣ ଦ୍ରବ୍ୟ ସନ୍ତୋଷ ଲାଭ କରିବ ତଥା ଜନସମାଜର ପ୍ରଭୂତ ମଙ୍ଗଳ ସାଧିତ ହେବ । ଅଧୁନା ଗ୍ରାମସମାଜର ଯେଉଁ ବାତୁଳତା ତାହା ସମ୍ପୂର୍ଣ୍ଣଭାବେ ଦୂରୀଭୂତ ହୋଇ ସେମାନଙ୍କୁ ଏକ ଦେବୋଚିତ ପ୍ରେରଣା ମଧ୍ୟରେ ଆବଦ୍ଧ କରିବ ।

ତେଣୁ ସେହି ଦ୍ରବ୍ୟଦୃଷ୍ଟି ପ୍ରତି ସଜାଗ ରହି ମହାପୁରୁଷଗଣ ଉଚିତ ଶିକ୍ଷାରେ ଭାବୀ ବଂଶଧରଗଣଙ୍କୁ ତାଲିମ୍ ଦେଇ ଦେଶ ତଥା ସମାଜର ମେରୁଦଣ୍ଡକୁ ସୁଦୃଢ଼ କରୁଥିଲେ । ସେହି ମାନସିକ ଓ ଶାରୀରିକ ଶିକ୍ଷାର ନିର୍ଦ୍ଦେଶ ଦେଇ ଗୋପବନ୍ଧୁ କହିଅଛନ୍ତି—

'ଅରଟ ଚଳାଅ ପ୍ରତି ଘରେ ଘରେ ।'

ଏହି ଉକ୍ତି ଏକପକ୍ଷେ ଶାରୀରିକ ତଥା ମାନସିକ ପ୍ରଫୁଲ୍ଲତା ଆଣିବା ସଙ୍ଗେ ସଙ୍ଗେ ଅର୍ଥନୀତି ପ୍ରତି ଜନମନ ଆକୃଷ୍ଟ କରିଛି । ଆଜିକାର ଶିକ୍ଷାପ୍ରାପ୍ତ ଯୁବକଗଣ ଚାକିରି ଉପରେ ଯେପରି ଆକାଶକୁ ଚାହିଁ ରହିଛନ୍ତି—ଚାକିରି ଆଶାରେ, ଦେଖିଲେ କ୍ଷୋଭ ଜାତ ହୁଏ । କିଏ କେଉଁଠି ଚାକିରି ପାଉଛି ତ'—କିଏ ନୀତିଭ୍ରଷ୍ଟ ହୋଇ ଆତ୍ମହତ୍ୟା କରୁଛି । ଆତ୍ମ-ସମ୍ମାନକୁ ଜଗି ନୀରବରେ କିଏ ଦୁଃଖ କଷ୍ଟ ଲଭୁଛି ତ—କିଏ ପୁଣି 'ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ' କହି ହା'ହତୋସ୍ମି ଡାକ ଛାଡ଼ୁଛି । ନୋହିଲେ କିଏ 'ବୁଭୁକ୍ଷିତଂ କିଂ ନ କରୋତି ପାପଂ'ର ଆଶ୍ରୟ ଗ୍ରହଣ କରୁଛି ।

ତେଣୁ ଏହି ବିପଜ୍ଜନକ ପରିସ୍ଥିତିରୁ ହସ୍ତଶିଳ୍ପ ହିଁ କେତେକାଂଶରେ ଦେଶକୁ ଉଦ୍ଧାର କରେ, ନିବିଡ଼ ନୈରାଶ୍ୟ ଭିତରେ ଆଲୋକରଶ୍ମି ଢାଳିଦିଏ, ଏହା ନିଃସନ୍ଦେହ । ଏଇଥିପାଇଁ ମହାମାନବ ବାପୁଜୀ ଚରଖା ଆନ୍ଦୋଳନ ଚଳାଇ ଲଙ୍କାସାୟରସ୍ଥିତ ସମଗ୍ର ଲୁଗାକଳଗୁଡ଼ିକରେ ତାଲି ପକାଇ ଦେଇଥିଲେ ।

ମନେ ରଖିବା ଉଚିତ ଯେ ମହାମାନବ ବାପୁଜୀଙ୍କ ଅବ୍ୟବହିତ ପୂର୍ବରୁ ଦୂରଦୃଷ୍ଟିସମ୍ପନ୍ନ ଗୋପବନ୍ଧୁ ଆଦ୍ୟରୁ ଭାରତରେ ଚରଖା ପ୍ରଚାର ଓ ଆନ୍ଦୋଳନର ସୂଚନା ଦେଇଥିଲେ । ତଥାପି ସେହି ଆନ୍ଦୋଳନ ପୂର୍ଣ୍ଣମାତ୍ରାରେ ଜାତୀୟ ସରକାରଙ୍କ ଅମଳରେ ସୁଦ୍ଧା ସଫଳ ନ ହୋଇ ପାରିବା ବଡ଼ କ୍ଷୋଭର ବିଷୟ । ସରକାର ଗାଁ ଗାଁ ଗୋଟିଏ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରାଇ ଚରଖା ପ୍ରଚାର ଦିଗରେ ଉଦ୍ୟମ କରିଥାନ୍ତି, ଅଥଚ ଆନ୍ତରିକତା ସେଥିରେ ନାହିଁ । ଗ୍ରାମ୍ୟ ଅର୍ଥନୀତି ତଥା ସ୍ୱାବଲମ୍ବନଶୀଳତା ଦିଗରେ ଚରଖାର ଗୁରୁତ୍ୱ ଉପଲବ୍ଧି କରୁଥିଲେ ସୁଦ୍ଧା ସେହି ଦିଗେ ସମ୍ପୂର୍ଣ୍ଣଭାବେ ମନୋନିବେଶ କରୁନାହାନ୍ତି । କଲେ ସୁଦ୍ଧା ପିଞ୍ଜୁ ଥିବା ବେଳେ ତାକୁଡ଼ିର ଅଭାବ କିମ୍ବା ପିଞ୍ଜୁ ଅଭାବରେ ତୁଳାର ଦୁର୍ଘଟ— ଯାହାକି ଗ୍ରାମବାସୀଙ୍କର ଚାହିଦା ମେଣ୍ଟାଇ ପାରୁନାହିଁ । ଯିମିତି ମନେ ହୁଏ ଏ ଗୋଟିଏ ପ୍ରହସନ । ଏହି ଆନ୍ଦୋଳନ ଭିତରେ ଯେଉଁ ସ୍ୱାଧୀନ ଚିନ୍ତା, ସ୍ୱାବଲମ୍ବନଶୀଳତା ତଥା ଦେଶପ୍ରୀତି ନିହିତ ଅଛି ତାହା କଣ ଜାତୀୟ ଜୀବନ ପକ୍ଷେ ଉପଯୋଗୀ ନୁହେ ? ଜାତୀୟଶିଳ୍ପର ବିକାଶ ଦିଗରେ ଏହା କ'ଣ ସହାୟକ ନୁହେ ?

ସେହି ଦୃଷ୍ଟିକୋଣରୁ ଗୋପବନ୍ଧୁ ଉଦ୍‌ବୋଧନ ଦେଇ ଗାଇଥିଲେ—

"ଅରଟ ଚଳାଅ ପ୍ରତି ଘରେ ଘରେ
ଗ୍ରାମର କଳହ ତୁଟାଅ ଗ୍ରାମରେ ।"

କିମ୍ବା

"ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ ।

ସ୍ୱରାଜ୍ୟ ସାଧନେ ଏହି ତିନ ପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ ।"

ଏଇଟି ରାଜନୀତିକ ଦୃଷ୍ଟିକୋଣ ଗୋପବନ୍ଧୁଙ୍କର ବେଶ୍ ପ୍ରକଟିତ । ଯାହାକି ଉପର ଠାଉରିଆ ଭାବରେ ନହୋଇ ଗମ୍ଭୀର ତଥ୍ୟମୂଳକ ଆଲୋଚନା ବ୍ୟାପକ ଭାବରେ ହୋଇଛି । ଗୃହରେ ଚରଖା, ଗ୍ରାମରେ ପଞ୍ଚାୟତ ପୁଣି ତୃଣମୂଳରେ ଗ୍ରାମ୍ୟ ଜୀବନରେ ଏକତା ଯେ ସ୍ୱରାଜ୍ୟ ସାଧନରେ ପୁଣି ଉତ୍ତରୋତ୍ତର କଲ୍ୟାଣ ଦିଗରେ ଦେଶ ତଥା ଜାତିର ସାହାଯ୍ୟ କରିବ—ତିଳେହେଲେ ସନ୍ଦେହ ନାହିଁ । ଜାତୀୟ ଜୀବନର ବିକାଶ ଦିଗରେ ପ୍ରଭୂତ ପ୍ରଭାବ ପକାଇ ସୁସ୍ଥ, ସବଳ ଓ ସୁନ୍ଦର ଦୁନିଆ ଗଢ଼ିବ । କିନ୍ତୁ ଏଇଟି ମନେ ରଖିବା ଉଚିତ ଯେ ଏହି ନୀତିଚୟ କେବଳ ଉତ୍କଳ ପାଇଁ ପ୍ରଯୁଜ୍ୟ ବୋଲି ଉଲ୍ଲେଖ ହୋଇଥିଲେ ସୁଦ୍ଧା ସୂକ୍ଷ୍ମ ଦୃଷ୍ଟିରେ ଅଳ୍ପ ବିଚାର କଲେ ଜଣାଯାଏ ଯେ ସାରା ମାନବସମାଜର କଲ୍ୟାଣ ଦିଗରେ ଏହି ନୀତିଚୟ ଜରୁର୍ ଆବଶ୍ୟକ । ମାନବ ମାନବ ମଧ୍ୟରେ ଯେଉଁ ସନ୍ଦେହ ଓ ଅବିଶ୍ୱାସ ଦିନୁଦିନ ପ୍ରବଳତର ହୋଇ ନାଗରିକ ଜୀବନକୁ କଳୁଷମୟ କରି ଦେଲାଣି—ତାହା କାହାରି ଅଗୋଚର ନୁହେଁ । କି ସହର କି ପଲ୍ଲୀ, କି ଭାରତ କି ଇଂଲଣ୍ଡ—ବିଶ୍ୱର ପ୍ରତ୍ୟେକ ସ୍ଥଳୀରେ ଏହି ଦ୍ୱେଷ ବିଦ୍ୱେଷ ସଙ୍ଘାମକ ରୋଗ ପରି ବ୍ୟାପି ଜୀବନର ଶୁଚିତାକୁ ନଷ୍ଟ କରି ମାନବିକତାର ଶୋଚନୀୟ ଅବନତି ଘଟାଇଛି । ନୋହିଥିଲେ ସହସ୍ର ସହସ୍ର ଡୋଲାର ଖର୍ଚ୍ଚ କରି ବିନାମୂଲ୍ୟରେ ଏଟମ୍ କିମ୍ବା ଉଦ୍‌ଜାନ ବୋମା ତିଆର ହୁଅନ୍ତା ନାହିଁ କିମ୍ବା ପ୍ରଳୟଙ୍କର ମହାଯୁଦ୍ଧର ପରିଣତି ଦୁନିଆ ପ୍ରାଣକୁ ଚମକି ଦିଅନ୍ତା ନାହିଁ ।

ଏଥିଯୋଗୁଁ ହିଁ ମାନବସମାଜ ଭିତରେ ଯେପରି ସହଯୋଗିତା, ସହାନୁଭୂତିଶୀଳତା ତଥା ବନ୍ଧୁତା ପ୍ରତିଷ୍ଠା ହୋଇ ଦୁନିଆ ଦରବାରରେ ସତ୍ୟ, ଶିବ, ସୁନ୍ଦରର ପ୍ରତିନିଧିତ୍ୱ ସୃଷ୍ଟି କରିବ, ସେଥିପ୍ରତି ଦୃଷ୍ଟି ଦେଇ ଗୋପବନ୍ଧୁ ଏହି ଚେତନା ଦେଇଥିଲେ । ଆଜି ସୁଦ୍ଧା ସେହି ଉପଦେଶର ମହତ୍ତ୍ୱ ପ୍ରତ୍ୟେକ ପ୍ରାଣ ନିବିଡ଼ ଭାବେ ଅନୁଭବ କରୁଛି ।

ତାହାଁପରେ ସ୍ୱରାଜ୍ୟ ଶାସନର ରୂପ ଦେଖି ଦେଇ କହି ଅଛନ୍ତି—

"ପ୍ରଜା ଲାଗି ରାଜ୍ୟ ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।"

ଏହି ଉକ୍ତିରୁ ସ୍ପଷ୍ଟଭାବେ ଜଣାଯାଏ ଯେ ଗଣତାନ୍ତ୍ରିକ ପନ୍ଥା ହିଁ ରାଜନୀତିର ଉତ୍କୃଷ୍ଟ ଉତ୍କର୍ଷ । ଗଣକୁ ନେଇ ରାଜାର ଗୌରବ ଗରିମା, ଦେଶର ବିଭବ ମଧ୍ୟ ଗରିମା—ଏହା ଯୁଗେ ଯୁଗେ ଶାସନପ୍ରଣାଳୀରେ ସୂଚନା ଦେଇ ଆସୁଅଛି । କାରଣ ପ୍ରଜା ନ ଥିଲେ ରାଜ୍ୟ ନାହିଁ କିମ୍ବା ରାଜା ନାହିଁ । ଆଜିକାର ରାଜତନ୍ତ୍ରର ସମାଧି ଉପରେ ଏପରି କହିଲେ ବେଶ୍ ବୁଝାଯିବ ଯେ ଶାସିତ ନ ଥିଲେ ଶାସକ ନାହିଁ କିମ୍ବା ଶାସନ ନାହିଁ । ଶାସନ ଯେହେତୁ ପ୍ରଜାଦ୍ୱାରା ଉଦ୍ଦିଷ୍ଟ, ପ୍ରଜାଲାଗି ସୃଷ୍ଟ ଓ ପ୍ରଜାଲାଗି ପୁଷ୍ଟ ।

ସେହିହେତୁ ରଘୁକୁଳତିଳକ ରାମଚନ୍ଦ୍ର ସାମାନ୍ୟ ରଜକ ରମଣୀର ଅସନ୍ତୋଷ ତଥା ବଦ୍ରୂପରେ ନିଜର ପ୍ରାଣ ପ୍ରିୟତମା ସତୀସାଧ୍ୱୀ ସୀତାଙ୍କୁ ଗର୍ଭାବସ୍ଥାରେ ବନବାସିନୀ କରାଇଥିଲେ । ଯେହେତୁ ସେ ଶାସନ ହେଉଛି ପ୍ରଜାର । ପ୍ରଜାର ମତରେ ସେ ଶାସନ ପରିଚାଳିତ । କୋଟି ଲାବଣ୍ୟନିଧିର ଅଧିକାରୀ ହୋଇ

ଯଥେଚ୍ଛାଚାରିତା କରିବା ଶାସକର ସେଇଠି କର୍ତ୍ତବ୍ୟ ନୁହେ । କାରଣ ଯେଉଁ ବହୁଣପୁଣ୍ୟ ଗଣ୍ଡାଘରର ସେ ଆଜ ଅଧିକାରୀ ହୋଇଛନ୍ତି ସେଇ ସମ୍ପତ୍ତି ତା'ର କଷ୍ଟାର୍ଜିତ ନୁହେ । କୋଟି କୋଟି ପ୍ରଜାର ତାହା ହେଉଛି ଲୁହ ଓ ଲହୁର ଧନ । ଶାସକ ସେଇଠି କେବଳ ସେ ସମ୍ପତ୍ତିର ପ୍ରହରୀ ମାତ୍ର । ବିନାନୁମତିରେ ପ୍ରଜାର ସେହି ଧନ ବରବାଦ୍ କରିବା ରାଜା ପକ୍ଷେ ସମ୍ଭବ ନୁହେ । ଆଜ ଯିମିତି ବିଭିନ୍ନ ଯୋଜନା ନାମରେ ଅଜସ୍ର ଧନ ରାଜକୋଷରୁ ବ୍ୟୟିତ ହୋଇ ଜନକଲ୍ୟାଣ ଦିଗରେ ଉପଯୋଗୀ ହୋଇ ପାରୁନାହିଁ, ତାହା ଗଣତାନ୍ତ୍ରିକ ଶାସନର ପ୍ରଣାଳୀ ନୁହେ । ମେଣ୍ଟାରିୟ ମତିରେ ଲୋକମତକୁ ଦଳ କମ୍ପା ନର୍ଦ୍ଦୟ ପୋଲିସବାହିନୀର ଅଗ୍ନିମୁଖା ସଙ୍ଗୀନ୍‌ରେ ଦେଶବସୀଙ୍କୁ ଭୟତ୍ରସ୍ତ କରାଇ ଶାସନ କଲେ ତାହା ଗଣତନ୍ତ୍ର ନୁହେ, ଗଣତନ୍ତ୍ରର ସପ୍ତମୀ ତତ୍ପୁରୁଷ ମାତ୍ର ।

ଅତଏବ ଶାସକ ଓ ଶାସିତ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ଆନ୍ତରିକତା ସର୍ବାଦୌ ବାଞ୍ଛନୀୟ, ଆଦର୍ଶନୀୟ ଓ ପାଳନୀୟ । ପୁଣି ମନେ ରଖିବା ଉଚିତ ଯେ ଏହି ମହତ୍ତ୍ୱପୂର୍ଣ୍ଣ କୀର୍ତ୍ତିର ସୁରକ୍ଷା ଓ ସମ୍ମାନ ରକ୍ଷା ପାଇଁ ଜାତୀୟ ଚରିତ୍ରରେ କେତେକ ଆବଶ୍ୟକ ସଂଯମ ଓ ଶୃଙ୍ଖଳା ପାଳନ କରିବା ବିଧେୟ । କେବଳ ସରକାର କରିବେ ତା' ନୁହେ ସତ, କିନ୍ତୁ ଲୋକଙ୍କ ଅପେକ୍ଷା ସରକାର ଏଥିପ୍ରତି ଅଧିକ ସଜାଗ ହେବା ଉଚିତ । ଯେହେତୁ ଶାସନ ହେଉଛି ଲୋକ-ନୀତିର ପ୍ରବର୍ତ୍ତକ ଓ ସଂସ୍କାରକ ଅର୍ଥାତ୍ ଯଥା ରାଜା ତଥା ପ୍ରଜା ।

ଉପସଂହାରରେ ଏତିକି ମାତ୍ର କହି ରଖେ ଯେ ଗୋପବନ୍ଧୁଙ୍କ ସ୍ୱଚ୍ଛଳ ହୃଦୟ, ସାଧୁତା, ନିଷ୍ଠାପରତା, ନିଃସ୍ୱାର୍ଥପରତା, ସେବା ଓ

ତ୍ୟାଗର ଅଦ୍ଭୁତ ବିଳାସିତା ତଥା ଜାତୀୟଭାବର ଆଦର୍ଶ ଯେପରି ତାଙ୍କୁ 'ଜାତୀୟ-ବୀର' ପଦବୀରେ ବିମଣ୍ଡିତ କରିଛି ଅବିକଳ ଠିକ୍ ସେହିପରି ସାହିତ୍ୟ ସାଧନରେ ପ୍ରିୟ ମାତୃଭୂମିର ପ୍ରୀତି ଓ ସ୍ୱଦେଶବତ୍ସଳତା, ଗଦ୍ୟ ଓ ପଦ୍ୟ ଉଭୟର ନୂତନ ଶୈଳୀର ପ୍ରବର୍ତ୍ତନା, ଭାବ ସହ ଭାଷା-ମାଧୁର୍ଯ୍ୟ ଯୋଜନାର ଅପରୂପ ସୁଷମା, ଲୋଭନୀୟ କଳାର ଉତ୍କର୍ଷତା ଓ ଚିତ୍ତାକର୍ଷଣୀୟତା, ସରଳ ରସୋଦ୍ରେକ ଭାଷାର ପ୍ରୟୋଜନୀୟତା ଓ ଗାମ୍ଭୀର୍ଯ୍ୟ, ଶବ୍ଦର ବିଳାସିତା ତଥା କବିତାରେ ସ୍ୱଚ୍ଛ ଭାବ, ଅଳଂକୃତିର ଦକ୍ଷତା ପ୍ରଭୃତି କଳାନୈପୁଣ୍ୟ ଚମତ୍କାରଭାବେ ପରିବେଷିତ ହୋଇ ଉତ୍କଳର ପବିତ୍ର ସାରସ୍ୱତ ନିକୁଞ୍ଜରେ "ଜାତୀୟ-କବି" ରୂପେ ତାହାଙ୍କୁ ଆସୀନ କରିଅଛି । ଏହି ଗୌରବ-ପ୍ରାଚୁର୍ଯ୍ୟ ହିଁ ଓଡ଼ିଆ ସାହିତ୍ୟକୁ ଗୋପବନ୍ଧୁଙ୍କ ମହାନ୍ ଅବଦାନ ।

ଏଇଠି ମନେ ରଖିବା ଉଚିତ ଯେ, ଆଜି ଯେତେବେଳେ **Political ideal** ବା ରାଜନୀତିକ ଆଦର୍ଶବାଦ ପ୍ରତାରଣାର ବଶବର୍ତ୍ତୀ ହୋଇ ଦେଶର ଶାସନକୁ ଅକ୍ତିଆର କରିଛି ଏବଂ ବ୍ୟବସାୟଗତ ସୂତ୍ରରେ ଲାଞ୍ଚ, ମିଛ, ଚୋରାବଜାର, ପ୍ରିୟାପ୍ରୀତି ଓ ସାମାଜିକ ଅନାଚାର ଓ ଅତ୍ୟାଚାର ସୃଷ୍ଟି କରିଛି, ଗୋପବନ୍ଧୁଙ୍କର ସେହି ମହନୀୟ ଆଦର୍ଶ ପ୍ରତି ସଚେତ ରହିବା ଅସମୀଚୀନ ନୁହେ । ଆଦର୍ଶ ଯଦିଓ 'ବିରାଡ଼-ବୈଷ୍ଣବ' ନୀତି ପୋଷଣ କରେ ସେଇଠି ଯେ କେବଳ କୌଣସି ବ୍ୟକ୍ତିଗତ ଜୀବନ କଳୁଷିତ ବା ଭ୍ରଷ୍ଟ ହୁଏ ତା' ନୁହେ, ସମୁଦାୟ ମାନବ ଜାତିର ପ୍ରଭୂତ କ୍ଷତି ସାଧିତ ହୁଏ, ବର୍ବରତାର ଚାରଭୂମି ରୂପେ ଦେଶ ପରିଗଣିତ ହୁଏ, ଏହା ନିଃସନ୍ଦେହ ।

ଅତଏବ ପ୍ରାର୍ଥନା କରେ—ଏଇ ଉତ୍କଳ ନିଜ ଜାତୀୟ-କବିଙ୍କର ଆଦର୍ଶ ଉପଲବ୍ଧି କରୁ । ଜାତୀୟ-ପ୍ରୀତି ଉଦ୍ରେକରେ ଓଡ଼ିଆ ଭାଷା ଓ ସାହିତ୍ୟ ମାର୍ଜିତ ଓ ବଳିଷ୍ଠ ହୋଇ ବିଶ୍ୱ-କଲ୍ୟାଣରେ ଆତ୍ମୋତ୍ସର୍ଗ କରୁ । ଓଡ଼ିଶାର ଆବାଳବୃଦ୍ଧବନିତା ବିଶେଷତଃ ଜାତିର ପ୍ରାଣଦା ଓ ପୁରୋଧା—ଲେଖକ, ସାହିତ୍ୟିକ, ଗାୟକ, ବକ୍ତା ପ୍ରଭୃତି କଳାବିତ୍‌ଗଣ ଚିର ନମସ୍କୃତ ଜାତୀୟ-କବିଙ୍କ ପଦାନୁସରଣ କରି ନିର୍ମଳ ଜାତୀୟ-ଜୀବନ ଗଠନ କରନ୍ତୁ । ଜାତି ତଥା ଭାଷାର ପ୍ରାଣରକ୍ଷା ନିମନ୍ତେ ଗୋପବନ୍ଧୁ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର ପ୍ରଭୃତି ଜାତୀୟ ବୀର ଓ କାଳାବିତ୍‌ଗଣ ଯେପରି ପ୍ରାଣପାତ କରିବାକୁ କୁଣ୍ଠାବୋଧ ନ କରି 'ପଛଘୁଞ୍ଚା ନାହିଁ ବୀରର ଜାତିକେ' ଧ୍ୱନି-ହୁଙ୍କାର ତୋଳିଥିଲେ—ସେଥିରେ ଉଦ୍‌ବୁଦ୍ଧ ହୋଇ ଉତ୍କଳୀ ତା' ଅତୀତ ଗୌରବ ରକ୍ଷା କରୁ । ଶ୍ରାଦ୍ଧ ପାଳନରେ ଗୋପବନ୍ଧୁଙ୍କ ଅମର-ସ୍ମୃତି ସୁମିରି ହେବା ସଙ୍ଗେ ସଙ୍ଗେ ପ୍ରକୃତ କର୍ତ୍ତବ୍ୟ ପାଳନରେ ଜଗନ୍ନାଥ ଦେଶର ମାହାତ୍ମ୍ୟ ବଜାୟ ରଖୁ । ପ୍ରତିଭୂପୂଜା ନାମରେ ପୁରୀ ସିଂହଦ୍ୱାର ନିକଟସ୍ଥ ଗୋପବନ୍ଧୁ ପ୍ରତିମୂର୍ତ୍ତି ଯେପରି ଅନିର୍ମଳ ଓ ହେୟ ହୋଇ ପଡ଼ିରହିଛି ସେଥିପ୍ରତି ଜନସାଧାରଣ ତଥା ଜାତୀୟ ସରକାରଙ୍କ ଦୃଷ୍ଟି ପଡ଼ୁ । ଦେଶ ବିଦେଶରୁ ଯେଉଁ କୋଟି କୋଟି ଯାତ୍ରୀ ପୁଣ୍ୟ ନୀଳାଚଳକୁ ଆସନ୍ତି ସେମାନେ ଯେପରି ଗୋପବନ୍ଧୁଙ୍କ ଅମର ପ୍ରତିଭା ପ୍ରତି ପରିଚିତ ହେବେ ସେଥିର ବନ୍ଦୋବସ୍ତ ହେଉ । ରାତିରେ ସେଇଠି ଆଲୁଅ ଦିଆଯାଉ । ପୁଣି ଉକ୍ତ ପୀଠସ୍ଥଳୀ ସଦାସର୍ବଦା ନିର୍ମଳ ରଖାଯାଉ । ପୁଣି ତାଙ୍କ କର୍ମକ୍ଷେତ୍ର ସତ୍ୟବାଦୀ ବକୁଳ ବନ ମଧ୍ୟରେ ତାଙ୍କର ସେହି ସମାଧି ସୁରକ୍ଷିତ ହୋଇ ପ୍ରତି ପ୍ରାଣରେ ଅଦ୍ଭୁତ ଜାତୀୟପ୍ରେରଣା ଖେଳାଇଦେଉ ଏବଂ ଉକ୍ତ ସତ୍ୟବାଦୀ

ବନ-ବିଦ୍ୟାଳୟର ଗୌରବ ସରକାରଙ୍କ ଶୁଭଦୃଷ୍ଟିକୁ ଫେରି ଆସୁ । ନୋହିଲେ ତାଙ୍କର ପ୍ରତିଶ୍ରୁତି ଆମର ହେବ ଅନ୍ୟାୟ ଓ ଅତ୍ୟାଚାର । ଏଇଠି ଅଧିକ କିଛି ନକହି ପୁଣ୍ୟାତ୍ମା ଗୋପବନ୍ଧୁଙ୍କ କଣ୍ଠରେ କେବଳ ସ୍ୱର ମିଳାଇ ଗାଇବି—"ଏ ମହାଦାକ୍ଷା କି ତୁଟିବ ଉତ୍କଳ ?"

ଓଁ ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !



ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍‌ରେ ଶ୍ରୀ ହାଡ଼ୁ ରାମଗୁରୁଙ୍କଦ୍ୱାରା ମୁଦ୍ରିତ । ୧୯୫୭ ।

